# ଓଡ଼ିଆର ଆତ୍ମକଥା

ମୂଳ ରଚନା : 'ବିନୋଦିନୀ'

ଭାଷାନ୍ତର : ଚନ୍ଦ୍ରଶେଖର ଦାସବର୍ମା

ଶଙ୍କରଲାଲ୍ ପୁରୋହିତ

ମୟୂର ପବ୍ଲିକେସନ୍ସ୍
ଭୁବନେଶ୍ୱର

ବିନ୍ଧିଆର ଆତ୍ମକଥା
ମୂଳରଚନା : ବିନୋଦିନୀ
ଭାଷାନ୍ତର : ଚନ୍ଦ୍ରଶେଖର ଦାସବର୍ମା
ଶଙ୍କରଲାଲ୍ ପୁରୋହିତ
ପ୍ରଚ୍ଛଦ : ଆଦିକନ୍ଦ
ପ୍ରଚ୍ଛଦ ମୁଦ୍ରଣ : ସ୍ନେହ ପ୍ରେସ୍, ଭୁବନେଶ୍ୱର
ମୁଦ୍ରଣ : ଡଗର ପ୍ରେସ୍, ଭୁବନେଶ୍ୱର-୧
ମୂଲ୍ୟ : ଷୋହଳ ଟଙ୍କା

Bindiyara Atma Katha
Author : **Binodini**
Translated by : Chandrasekhar Das Burma
Shankarlal Purohit
Cover Design : Adikanda
Cover Printing : Sneha Press, BBSR-1
Printer : Dagara Press. Bhubaneswar-1
**MAYUR PUBLICATIONS : 1988**
**Price Rupees Sixteen only.**

କ୍ରମ

ମୋର
ସ୍ୱର୍ଗୀୟା ମାତା
ଶ୍ରୀମତୀ ଶକୁନ୍ତଳା ଦେବୀଙ୍କ
ସ୍ମୃତି ଉଦ୍ଦେଶ୍ୟରେ
ସମର୍ପିତ

## ଓଡ଼ିଆ ସଂସ୍କରଣର ଭୂମିକା

ସେ ଦିନ ଗୌହାଟୀରେ ଥିଲା ନିଖିଳ ଭାରତ ଲେଖିକା ସମ୍ମିଳନୀର ଏକ ଅପୂର୍ବ ସମାରୋହ । ମୋ ଉପରେ ଦାୟିତ୍ୱ ଥିଲା ଓଡ଼ିଶାର ଏକମାତ୍ର ଲେଖିକା ପ୍ରତିନିଧି ଶ୍ରୀମତୀ କୁନ୍ତଳା କୁମାରୀ ଆଚାର୍ଯ୍ୟଙ୍କର ପରିଚର୍ଯ୍ୟା । ପ୍ରଥମ ଦେଖାରୁ ଏକ ଅହେତୁକ ଆବେଗ, ଉଚ୍ଛ୍ୱାସ ଓ ମମତାର ବନ୍ଧନରେ ଦୁହେଁ ଦୁହିଁଙ୍କ ଆଡ଼କୁ ଆକର୍ଷିତ ହୋଇ ପଡ଼ିଲୁ । ତିନିଦିନର ରହଣି ଭିତରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଷୟରେ ବହୁବିଧ ଆଲୋଚନା ମଧ୍ୟରେ ମନ ମୋର ବ୍ୟାକୁଳ ହେଲା. ମୋର ଗୋଟିଏ ହେଲେ ବହି ଓଡ଼ିଆ ଭାଷାରେ ରୂପାନ୍ତରିତ ହୁଅନ୍ତା କି ?

ଓଡ଼ିଆ ଲେଖିକା, ପାଠିକାଙ୍କ ହୃଦୟ ଯେ ଗୁଣଗ୍ରାହିତାରେ ଭରପୂର ଏ ବିଶ୍ୱାସ ମୋର ଆସିଗଲା । ଭଉଣୀ ସୁଲେଖିକା ଶ୍ରୀମତୀ କୁନ୍ତଳା-ଆଚାର୍ଯ୍ୟ ଏ ଦାୟିତ୍ୱ ଆପେ ଆପେ ନେଇଗଲେ । ଓଡ଼ିଶା ଫେରି "ବନ୍ଧ୍ୟା କି ଆତ୍ମକଥା"ର ଅନୁବାଦ ପାଇଁ ଚେଷ୍ଟିତ ହେଲେ । ବନ୍ଧୁ ଡକ୍ଟର ଶଙ୍କରଲାଲ୍ ପୁରୋହିତ ଓ ଶ୍ରୀ ଚନ୍ଦ୍ରଶେଖର ଦାସବର୍ମା ଆଗ୍ରହର ସହିତ ଏହି ଅନୁବାଦ କାର୍ଯ୍ୟ ସମ୍ପନ୍ନ କରିଥିବାରୁ ମୁଁ ସେମାନଙ୍କ ନିକଟରେ ଋଣୀ । ସର୍ବଶେଷରେ ଶ୍ରୀମତୀ ଆଚାର୍ଯ୍ୟ ମୟୂର ପବ୍ଲିକେସନ୍ସ୍ ସହିତ ଯୋଗାଯୋଗ କରି ଏହାକୁ

ନିଖୁଣ ଭାବରେ ପ୍ରକାଶିତ ହେବାର ଦାୟିତ୍ୱ ବହନ କରି ଯେଉଁ ନିଷ୍ଠା ଓ ଐକାନ୍ତିକ ଭାବର ମହନୀୟତା ଦେଖାଇଛନ୍ତି, ସେଥିପାଇ ମୁଁ ତାଙ୍କ ନିକଟରେ ଋଣୀ ।

ମୟୁର ପବ୍ଲିକେସନ୍ସ୍, ଡିଗର ପ୍ରେସ୍, ସ୍ନେହ ପ୍ରେସ୍, ପ୍ରଚ୍ଛଦ ଶିଳ୍ପୀ ଆଦିକନ୍ଦ ଅଳ୍ପ ସମୟ ମଧ୍ୟରେ ପୁସ୍ତକ ପ୍ରକାଶନରେ ସଯତ୍ନ ପ୍ରଚେଷ୍ଟା କରିଥିବାରୁ ସେମାନଙ୍କୁ ମୋର ଧନ୍ୟବାଦ ଜଣାଉଛି । ଏକ ଅପରିଚିତ ଲେଖିକାର ବହି ପ୍ରକାଶନରେ ଏମାନେ ସମସ୍ତେ ଯେଉଁ ଅକୁଣ୍ଠ ସ୍ନେହ, ମମତା ଓ ଶ୍ରଦ୍ଧା ପ୍ରଦର୍ଶନ କରିଛନ୍ତି ତାହାର ତୁଳନା ନାହିଁ । ଏହା ଓଡ଼ିଆ ଜାତି ତଥା ଭାଷାର ଅତୁଟ ଉଦାରତାର ନିଦର୍ଶନ ।

ସର୍ବଶେଷରେ ଓଡ଼ିଶାର ଅଗଣିତ ପାଠକ ପାଠିକାଙ୍କଦ୍ୱାରା 'ବନ୍ଧ୍ୟାର ଆତ୍ମକଥା' ଆଦୃତ ହେଲେ ନିଜକୁ କୃତାର୍ଥ ମଣିବି ।

ଏପ୍ରିଲ୍ ୧, ୧୯୮୮

ବାମୁନି ମଇଦାନ ହିଲ୍ସ୍
ଗୁଆହାଟୀ, ଆସାମ

-ବିନୋଦିନୀ

# ବନ୍ଦିଆର ଆତ୍ମକଥା

### ।। ୧ମ ଅଧ୍ୟାୟ ।।

ନାରୀ ନିକେତନର ଏହିି କଳା କୋଠରୀରେ ପଡ଼ିପଡ଼ି ମୋର ଗୋଟେ ଯୁଗ ବିତିଗଲା । ଅସମୟରେ ମୋତେ ବାର୍ଦ୍ଧକ୍ୟ ଘୋଟିଗଲା । ବର୍ତ୍ତମାନ ମୁଁ କେବଳ ମୃତ୍ୟୁକୁ ହିଁ ଅପେକ୍ଷା କରୁଛି । କିନ୍ତୁ ଲାଗୁଛି ମୃତ୍ୟୁ ଯେପରି ଅନ୍ୟମାନଙ୍କ ପରି ମୋତେ ଉପହାସ କରି ମୋଠୁ ଦୂରେଇ ଯାଉଛି ।

ମୋର ଅତୀତ, ବିତିଯାଇଥିବା ଜୀବନ ମୋ ଆଖି ଆଗରେ ସିନେମାର ଶ୍ଵେତ ଆଛିବର ଦୃଶ୍ୟପରି ଗୋଟିକ ପରେ ଗୋଟିଏ ଆସି ପୁଣି ଅପସରି ଯାଉଛନ୍ତି ।

ବିହାରରେ ଗୋଟିଏ ଛୋଟିଆ ଗାଁ 'ରାଜନଗରେ', ସେଠାରେ ମୋ ବାପା ଏକ ଚିନି କଳରେ ମେକାନିକ୍ କାମ କରୁଥିଲେ । ମିଲ୍‌ର କ୍ୱାଟରରେ ହିଁ ମୋର ଜନ୍ମ । ମୋତେ ଯେତେବେଳେ ତିନିବର୍ଷ, ସେତେବେଳେ ମୋର ଏକ ଛୋଟ ଭାଇ ଜନ୍ମ ହେଲା । କିନ୍ତୁ ସେ ଛୋଟ ଭାଇଟି ପିଲାଟି ଦିନରୁ ଖୁବ୍ ଦୁର୍ବଳ ଥିଲା । ପିଲାଟି ଖାଲି ରୋଗି ଥିଲା । ତା ରୋଗ ଦେଖି ବାପାମଧ୍ୟ ଡରି ଯାଉଥିଲେ । କିନ୍ତୁ ମାଆ ଯେତେବେଳେ ସକାଳୁ ଗାଧୋଇ ପଡ଼ି ଶାଢ଼ୀ ପିନ୍ଧି ସିନ୍ଦୁର ଅଲତା ଲଗାଇ ବାହାରି ଯାଉଥିଲେ ସେତେବେଳେ ସେ ବହୁତ ସୁନ୍ଦର ଦେଖାଯାଉଥିଲେ । ମୋର ଇଚ୍ଛା ହେଉଥିଲା ମାଆଙ୍କର କାନ୍ଧ ଉପରେ ଝୁଲି ପଡ଼ିବାକୁ । ଯେତେବେଳେ

ମୁଁ ଯାଇ ମାଆଙ୍କ କାନକୁ ଭିଡ଼ି ଧରୁଥିଲି ସେ ଚିଡ଼ି ଉଠୁଥିଲେ ଏବଂ କହୁଥିଲେ— "ଦେଖ ଏ ପିଲାଟାକୁ, ବର୍ତ୍ତମାନ ମୁଁ ଗାଧୋଇ ସଫା ଶାଢ଼ୀଟିଏ ପିନ୍ଧିଛି, ଗନ୍ଧିଆ ହାତ ଲଗାଇ ସବୁ ନଷ୍ଟ କରିଦେଲା, ଦୁଷ୍ଟ ପିଲାଟା······, ଦୟାକରି ମତେଟିକେ କିଛି ସମୟ ଶାନ୍ତିରେ ରହିବାକୁ ଦେ" ।

ମୁଁ ମାଆଙ୍କର ଏପରି ରୁକ୍ଷ ବ୍ୟବହାରରେ ଡରି ଯାଉଥିଲି । ମାଆ ତାଙ୍କର ସବୁଯାକ ସ୍ନେହ ସାନ ଭାଇ ଉପରେ ଅଜାଡ଼ି ଦେଉଥିଲେ । ମୋର ଈର୍ଷା ହେଉଥିଲା । ମାଆ ତାକୁ କୋଳରେ ଧରି କ୍ଷୀର ପିଆଉଥିଲେ । ମୋର ମଧ୍ୟ ଇଚ୍ଛା ହେଉଥିଲା ମାଆଙ୍କ କୋଳରେ ବସିବାକୁ । ମୁଁ କୋଳରେ ବସିବାକୁ ଜିଦ୍ କରିବାରୁ ମା ମୋତେ ଧକ୍କାଦେଇ ବିରକ୍ତ ହୋଇ କହୁଥିଲେ — "ଏତେ ବଡ଼ ପିଲାଟେ ହେଲୁଣି ଆହୁରି କୋଳ ଖୋଜୁଛୁ ? ମୁଁ ଯଦି ତତେ କୋଳରେ ଧରି ବସିବି ତେବେ ଘରର କାମଦାମ କରିବ କିଏ ମ?"

ବାପୁ ରାତିରେ ପ୍ରାୟ ଡେରିରେ ଘରକୁ ଫେରନ୍ତି । ସେତେବେଳକୁ ମୁଁ ପ୍ରାୟ ଶୋଇପଡ଼ିଥାଏ । କିନ୍ତୁ କେବେ କେବେ ରାତିରେ ପାଟିଶୁଣି ମୋ ନିଦ ଭାଙ୍ଗି ଯାଏ ଏବଂ ଦେଖେଁ ବାପୁ ମଦପିଇ ମାତାଲ ଅବସ୍ଥାରେ ମାଆକୁ ବାଡ଼େଇବାରେ ଲାଗିଛନ୍ତି । ମାଆ ଖୁବ୍ ଜୋରରେ ବାପୁଙ୍କୁ ଗାଳି ଦେଉଛନ୍ତି ଏବଂ କାନ୍ଦୁଛନ୍ତି । ମୁଁ ଡରରେ କମ୍ପି ଉଠେଁ । ପୁଣି କିଛି ସମୟପରେ ରାଗ ଥମିଯାଏ ଏବଂ ଦୁହେଁ ନିଦିଯାନ୍ତି । ପୁଣି କିଛି ସମୟପରେ ମୁଁ ଫୁସୁରୁ ଫୁସୁରୁ କଥା ଶୁଣିବାକୁ ପାଏଁ । ଏବଂ ପରେ ପରେ ଯୋର୍‌ରେ ନିଶ୍ୱାସ ପ୍ରଶ୍ୱାସ ନେବାର ଶବ୍ଦ ଶୁଭେ ।

ମୋତେ ଲାଗୁଥିଲା ସତେ ଯେପରି ମତେ ଘରେ କେହି ଭଲ ପାଆନ୍ତି ନାହିଁ । ମା, ବାପୁ କାହାରକୁ ହେଲେ ମୋତେ ଟିକିଏ ଗେଲ କରିବାପାଇଁ ସମୟ ମିଳୁନଥିଲା । ଶ୍ରେଷ୍ଠ ଭାଇ ତ ମତେ ଦେଖିଲେ ଚିଡ଼ୁଥିଲେ । ସମସ୍ତେ ତାକୁ ଶ୍ରେଷ୍ଠ ବୋଲି ଆଦର କରୁଥିଲେ କିନ୍ତୁ ମୁଁ ମଧ୍ୟ ଶ୍ରେଷ୍ଠ ପିଲା ଥିଲି ଏବଂ ବାପା ମାଆଙ୍କର ଆଦର ଦାବୀ କରୁଥିଲି । ମୋର ଖାଲିଖାଲି ରାଗ ହେଉଥିଲା । ମୁଁ ଯେତେ-

ବେଳେ ତାକୁ ଏକୁଟିଆ ପାଉଥିଲି ପିଟି ପକାଉଥିଲି ଏବଂ ଧକ୍କାପକ୍କାରା ଭୟରେ ଲୁଚି ଯାଉଥିଲି । କେତେବେଳେ ମାଆଙ୍କ ଆଗରେ ଧକ୍କାପକ୍କା ମାଡ଼ ମଧ୍ୟ ଖାଉଥିଲି । କିନ୍ତୁ ସେ ସବୁକୁ ମୁଁ ଖାତିର କରୁନଥିଲି । ମୋ ସାଙ୍ଗରେ ଖେଳିବାକୁ ମଧ୍ୟ କେହି ସାଙ୍ଗ ନଥିଲେ । ଏକୁଟିଆ ମୁଁ ଘର ଭିତରେ କେବେକେବେଳେ ଘରବାହାରେ ରାସ୍ତାରେ ଖେଳୁଥିଲି । ଯେତେବେଳେ ଭୋକ ଲାଗୁଥିଲା ଘରକୁ ଆସୁଥିଲି । ପ୍ରତିଦିନ ମୋର ଏଇଆ ହିଁ ଥିଲା କାମ ।

ବାହାରର ଲୋକମାନେ ମୋତେ ଖେଳୁଥିବା ଦେଖି ପଚାରୁ ଥିଲେ, "ଏତେ ସୁନ୍ଦରିଆ ଗୁଲୁଗୁଲିଆ ଝିଅଟା କାହାର ମ ? ଏ ଝିଅଟିର ଆଖି ଏବଂ ମୁହଁ କି ଚମତ୍କାର ହୋଇଛି ।"

ଜଣେ ତାଙ୍କର ଭିତରୁ ଆଖିମାରି ଉତ୍ତର ଦେଲା "ଭଲ କଥା ଅଛି କମ୍ପାନୀକୁ ଡାକେ କେଉଁ ଜଣା ?" ଇଏପରା ମେକାନିକ୍ ଶ୍ରୀକାନ୍ତର ଝିଅ, ସେଇ ଯୋଉ ବଲିଆ ଫେଜ୍ ଇଞ୍ଜିନିୟର ଆସିଥିଲେ, ସେତେବେଳେ ଶ୍ରୀକାନ୍ତର ସ୍ତ୍ରୀ ତାଙ୍କ ବଙ୍ଗଳାକୁ ଯିବା ଆସିବା କରୁଥିଲା ... ଏଥର ବୁଝିଲୁ... ?

ମୁଁ ସେତେବେଳେ ଏ କଥାର ଅର୍ଥ କିଛି ବୁଝି ପାରୁ ନଥିଲି । ମୁଁ ଯେହେତୁ ସୁନ୍ଦର ଥିଲି କେତେ ପ୍ରକାରର ଲୋକେ ମୋତେ କୁଣ୍ଢାଇ ଧରି, କୋଳକୁ ନେଇ ଗାଲରେ ଚୁମା ଦେଉଥିଲେ । ମତେ ଏକୁଟା ଭଲ ଲାଗୁନଥିଲା । ଏ ସବୁ ଅଭ୍ୟାସ ବଢ଼ିବାରୁ ମୁଁ ଲୋକମାନଙ୍କ ପାଖକୁ ଯିବାପାଇଁ ଇଚ୍ଛା କଲିନାହିଁ ସେମାନଙ୍କଠାରୁ ଦୂରେଇ ରହିବାପାଇଁ ଚେଷ୍ଟା କଲି । କାନ୍ଥଟିଆ ଯାଗା ଦେଖି ସେଠାରେ ଖେଳିଲି । ପାଖ ଆଖର ପିଲାମାନେ ମଧ୍ୟ ମୋ ସହିତ ଖେଳିବାକୁ ଆସିଲେ ନାହିଁ । ମୁଁ ନିଜକୁ ବଡ଼ ଏକୁଟିଆ ମନେ କଲି ।

ଏହି ସମୟରେ ମାଆଙ୍କ କୋଳକୁ ଆଉ ଗୋଟେ ଝିଅ ଆସିଯାଇଥିଲା । ଘରେ ତ ଅଗରୁ ହିଁ ଗଣ୍ଡଗୋଳ ଲାଗିରହୁଥିଲା । ମାହକିର ଦରମାହକୁ ବାପୁ ମଦ

ପିଇ ଉଡ଼ାଇ ଦେଉଥିଲେ । ଝିଅ ପାଇଁ ମାଆ ବାପୁଙ୍କ ମଧ୍ୟରେ ଝଗଡ଼ା ଲାଗି ରହୁଥିଲା । ମୋତେ ଆଗପରି ଆଉ ଖାଇବାକୁ ଦିଆଗଲା ନାହିଁ । ଖାଇବାରେ କଟକଣା ଜାରି ହେଲା । ସବୁବେଳେ ମୋତେ ଭୋକ ଲାଗୁଥିଲା । ଯେତେବେଳେ ମୁଁ ପଡ଼ୋଶୀ ମାଆମାନଙ୍କୁ ନିଜ ପିଲାଙ୍କୁ କୋଳରେ ବସାଇ ଖୁଆଇବାର ଦେଖୁଥିଲି ମୁଁ ସେତେବେଳେ ହିଂସାରେ ଜଳିଉଠୁଥିଲି । ସେମାନେ ମତେ ଗାଳି-ଦେଇ ଘଉଡ଼ା କରି ଦେଉଥିଲେ କହୁଥିଲେ— "ଡାହାଣୀଟାଏ ମୋ ପିଲା ଉପରେ ନଜର ପକାଉଛି ।"

ମତେ ସେତେବେଳକୁ ପାଞ୍ଚ ବର୍ଷ ହୋଇ ଯାଇଥିଲା । ଦିନେ ମା ବାପୁଙ୍କୁ କହିଲେ — "ଏ ଝିଅଟା ପୁରା ବିଗିଡ଼ି ଗଲାଣି, ଝଗଡ଼ା ହୋଇ ଗଲାଣି, ଯାଆଲୁ ନେଇ ମିଲ୍‌ର ସ୍କୁଲରେ ଭର୍ତ୍ତି କରିଦିଅ, ଘରେ କିଛି ସମୟ ପାଇଁ ଶାନ୍ତି ଆସିବ, ଆଉ ପିଲାଟା କିଛି ପାଠ ମଧ୍ୟ ଶିଖି ଯିବ ।"

ପରଦିନ ବାପୁ ମତେ ସକାଳୁ ଗାଧୋଇ ପାଧୋଇ ନୂଆ ଜାମା ପିନ୍ଧାଇ ହେଡ୍‌ମାଷ୍ଟରଙ୍କ ପାଖକୁ ନେଇଗଲେ । ହେଡ୍‌ମାଷ୍ଟର ମତେ ବହୁତ ଗେଲ କଲେ ଏବଂ ସ୍କୁଲରେ ନାଁ ଲେଖାଇ ଦେଲେ । କହିଲେ—"ଆରେ ସ୍ୱୀକଟ ! ତୋର ଝିଅଟି ବଡ଼ ହେଲେ ବଡ଼ ସୁନ୍ଦର ଏବଂ ବୁଦ୍ଧିମତୀ ହେବ, ପଢ଼ାପଢ଼ି କରି ଖୁବ୍ ନାଁ କରିବ । "

ସ୍କୁଲ ଜୀବନ ଆରମ୍ଭ ହେଲା ପରେ ମତେ ଏକ ନୂଆ ଜୀବନ ମିଳିଲା । ମତେ ବହୁତ ଖୁସି ଲାଗିଲା । ସକାଳୁ ସକାଳୁ ମୁଁ ଉଠି ନିଜେ ହାତ ମୁହଁ ଧୋଇ ସଜ ହୋଇ ଯାଉଥିଲି, ମାଆ ମତେ ବଢ଼ିଆ ବେଶରେ ସଜାଇ ଦେଉଥିଲେ ଏବଂ ଭଲ ଭଲ ଖାଇବାକୁ ଦେଇ ସ୍କୁଲ ପଠାଇ ଦେଉଥିଲେ । ଆଉ ଆଗପରି ରାଗୁ ନଥିଲେ । ଛୁଟି ହେଲା ପରେ ମୁଁ ଘରକୁ ଫେରିଲେ ମାଆ ମତେ ଆଦର କରୁଥିଲେ ।

ମୋ ଶ୍ରେଣୀରେ ମ୍ୟାନେଜର ସାହେବଙ୍କ ଗୋଟେ ଝିଅ ପଢ଼ୁଥିଲା ଏବଂ ତାର ବଡ଼ ଭଉଣୀ ଆମଠୁ ଗୋଟେ କ୍ଲାସ ଉପରେ ପଢ଼ୁଥିଲା । ସେ ଦୁଇଜଣଙ୍କ

ନାଁ ଥିଲା ସାଧନା ଏବଂ ଆରାଧନା । ଦୁଇଜଣଯାକ ବଡ଼ ସିଧା ଏବଂ ସରଳ ପ୍ରକୃତିର ଥିଲେ । ଏତେ ବଡ଼ ଅଫିସରଙ୍କ ଝିଅ ଏବଂ ମନରେ ଟିକିଏ ଗର୍ବ ନାହିଁ । କ୍ଲାସରେ ମୁଁ ସବୁଠୁ ଭଲ ପଢୁଥିଲି । ଏଣୁ ମୋତେ ସମସ୍ତେ ଖାତିର କରୁଥିଲେ । ମତେ ପାଠ ବିଷୟରେ ସବୁବେଳେ ପଚାରୁଥିଲେ । ମତେ ଭାରି ଖୁସି ଲାଗୁଥିଲା । ଏପର୍ଯ୍ୟନ୍ତ ମୋତେ ଖାଲି ତିରସ୍କାର ମିଳୁଥିଲା । ଏବେ ମତେ ସମ୍ମାନ ଏବଂ ପ୍ରେମ ମିଳିଲା । ମୁଁ ସ୍କୁଲ ଛୁଟି ହେଲେ ମଧ୍ୟ ଘରକୁ ସିଧା ଯିବାକୁ ଇଚ୍ଛା କରୁ ନଥିଲି ।

ସେଦିନ ସାଧନା କହିଲା, "ବନ୍ଧୁଆ ! ତୁ ସ୍କୁଲ ଛୁଟି ପରେ ଆମ ଘରକୁ ଚାଲିଆ । ଆମେସବୁ ସାଙ୍ଗହୋଇ ସ୍କୁଲ ପଢ଼ା କରିବା ଏବଂ ଖେଳିବା ।"

ମୁଁ ଏଥିରେ ରାଜି ହୋଇଗଲି । ସନ୍ଧ୍ୟାରେ ସ୍କୁଲ ଛୁଟି ପରେ ତାଙ୍କ ସାଙ୍ଗରେ ତାଙ୍କ ଘରକୁ ଗଲି । କିନ୍ତୁ ସତରେ ମତେ ଡର ଲାଗୁଥିଲା । ଏତେ ବଡ଼ ସାହେବଙ୍କ ଝିଅ, ବଡ଼ ଘର ବଡ଼ କଥା । ମେମ୍ ସାହେବ ଯଦି ରାଗି ମାଗି ଯିବେ ତ ସରିଲା କଥା । ଝିଅମାନେ ତ ମତେ ସାଙ୍ଗରେ ନେଇ ଆସିଲେ, ଯଦି ତାଙ୍କ ମା ମତେ ସେମାନଙ୍କ ସାଙ୍ଗରେ ଖେଳିବାକୁ ନଦେବେ ତ ? ଯଦି ବିରକ୍ତ ହୋଇ କିଛି କହି ଦିଅନ୍ତି ତ .. ?

କିନ୍ତୁ ଠିକ୍ ଓଲଟା ହିଁ ହେଲା । ତାଙ୍କ ମା ମତେ ଖୁବ ସ୍ନେହରେ କହିଲେ "ଆରେ ଏ ବୈକୁଣ୍ଠର ଝିଅ, ବହୁତ ତ ସୁନ୍ଦର ଝିଅଟା ।" ମାଆ ଅତ୍ୟନ୍ତ ଆନନ୍ଦରେ ମତେ, ସାଧନା ଏବଂ ଆରାଧନାକୁ ଏକାଠି ଖାଇବାକୁ ଦେଲେ ଆଉ କହିଲେ "ତୁ ପ୍ରତିଦିନ ଆସି ଏଠି ଆମ ଝିଅମାନଙ୍କ ସହିତ ଖେଳିବୁ ଏବଂ ପଢ଼ିବୁ ।"

ସେଦିନ ମୁଁ ଘରକୁ ଫେରୁ ଫେରୁ ଅନେକ ଡେରି ହେଲି । ରାତି ଦଶଟା ବେଳକୁ ବାପୁ ମତେ ଖୋଜିବାକୁ ଆସି ପହଞ୍ଚିଲେ ମ୍ୟାନେଜରଙ୍କ ଘରେ - ମତେ ଦେଖି ବିଗିଡ଼ିଗଲେ । ମା ଏକଥା ଶୁଣି କହିଲେ "ଆରେ ବୈକୁଣ୍ଠ, ! ତମେ ଛୁଆ ଉପରେ କାହିଁକି ବିଗୁଡୁଛ ? ମୋ ଝିଅମାନେ ତାକୁ ସ୍କୁଲରୁ ଡାକି

ଅଛିନ୍ତି । ସେ ତ ମୋ ଠୁଁ ଅମମାନଙ୍କର ସାଙ୍ଗ । ତୋ ଠୁଁ ଅଠା ବହୁତ ଗୁଳିକ । ସେ ଏଠିକୁ ଆସିଲେ ଅନେକ କିଛି ଶିଖିବ । ତୁ ଗୋଟେ କାମ କର, ରାତିରେ ତୁ ସେତେବେଳେ ତୋ'ର ଡ୍ୟୁଟି ସାରି ଘରକୁ ଫେରିବୁ ସେତେବେଳେ ଗଲା ବେଳେ ତୋ ଠୁଁ ଅକୁ ଆମଘରୁ ନେଇଯିବୁ ।"

ମୁଁ ଏ ପ୍ରକାର ବ୍ୟବସ୍ଥା କଥା ଶୁଣି ଖୁବ୍ ଖୁସି ହୋଇଗଲି । ସନ୍ଧ୍ୟା-ବେଳେ ଦାଦାମାନଙ୍କ ଘରୁ ଖାଇ ପିଇ ଯାଏଁ ଏବଂ ସାଥିରେ ଦାଦାମାନଙ୍କର ପୁରୁଣା ଜାମା ପଟା ମଧ୍ୟ ପିନ୍ଧିବାପାଇଁ ନେଇଯାଏଁ । ଏଥିରେ ଘରର କଷ୍ଟ ବୋଝ ମଧ୍ୟ ହାଲୁକା ହୋଇ ଚଳି ।

ମୋର ସ୍କୁଲ ଦରମା ଛାଡ଼ ଥିଲା ଆଉ ଏବେ ଦାଦାଙ୍କ ଦୟାରୁ ବହି ଖାତା ପେନ୍ସିଲ ମଧ୍ୟ ମାଗଣାରେ ମିଳୁଥିଲା । ମୁଁ ଦାଦାଙ୍କ ମାଙ୍କୁ ମଧ୍ୟ ମାଆ ବୋଲି ଡାକୁଥିଲି, ସେ ମୋର ଅନେକ ସୁବିଧା କରି ଦେଉଥିଲେ । ସନ୍ଧ୍ୟାବେଳେ ଆମେ ସବୁ ରେଡ଼ିଓରୁ ଗୀତ ଶୁଣୁ ଏବଂ ପରେ ପରେ ସେଇ ଗୀତସବୁକୁ ମୁଁ ହବହୁ ଲୟରେ ନକଲ କରି ଗାଇଦିଏ । ପୁଣି ବେଳେ ବେଳେ ଆମେ ସବୁ ମିଶି ଛୋଟ ନାଟକ କରୁ । ମା ଆମର ଦର୍ଶକ ହୁଅନ୍ତି । ତାଙ୍କୁ ଆମର ନାଟକ ଗୀତ ନାଚ ଦେଖିବାକୁ ଭଲ ଲାଗୁଥିଲା ।

ଛୁଟି ଦିନରେ ମତେ ଘରେ ବସିବାକୁ ଭଲ ଲାଗୁ ନଥିଲା । ମୁଁ ସକାଳୁ ସକାଳୁ ଘରୁ ପଳାଇ ଆସୁଥିଲି । ଏମିତି ପିଲାଦିନର ତିନି ପାଞ୍ଚ ବର୍ଷ ଆନନ୍ଦରେ କଟିଗଲା । ମୁଁ ପଞ୍ଚମ ଶ୍ରେଣୀ ପାସ୍ କରିଗଲି । ଆଉ ସେ ସ୍କୁଲଟିରେ ତ ଆଗକୁ ପଢ଼ିବାର ନଥିଲା । ସାଧନା ଆଉ ଆରାଧନା ଦିଦିଙ୍କୁ ଅଧିକ ପଢ଼ିବାପାଇଁ ମା ବେଢ଼ଯା ପଠାଇ ଦେଲେ । ମୋ ପଢ଼ା ସେଇଠିରେ ବନ୍ଦ ହୋଇଗଲା । ମନଟା ମୋର ଦୁଃଖ ହୋଇଗଲା ।

ମା ଦିନେ ମତେ ଡାକି କହିଲେ – "ଆରେ ସାଧନା ନଥିଲେ କଣ ହେଲା ଆମେ ସବୁ ନାହୁଁ କି, ତୁତ ଆମର ଆଉ ଗୋଟିଏ ଝିଅ । ତୁ ଏଠି

ଖାଇ ପିଇ ରହ । ତୁ ମତେ ଗୀତ ଶୁଣାଇବୁ ଆଉ ମତେ ବି ମୋ ଝିଅମାନଙ୍କର ଅନୁପସ୍ଥିତି ଆଉ ବାଧିବନି ।

ମୁଁ ଏକଥା ଶୁଣି ଖୁବ ଖୁସି ହୋଇଗଲି । ତା ପରଦିନ ମୁଁ ମୋର ଲୁଗା ପଟା ଧରି ମାଙ୍କ ଘରେ ହାଜର ହୋଇଗଲି । ଖାଲି ବସି ବସି ମୋ ମନ ଛକଟା ଧରି ଯାଉଥିଲା ଏଣୁ ମୁଁ ମାଙ୍କୁ ଘରର ବିଭିନ୍ନ କାମରେ ସାହାଯ୍ୟ କରୁଥିଲି । ମୋ କାମ ମାଙ୍କ ଘରେ ସମସ୍ତଙ୍କୁ ପସନ୍ଦ ଲାଗୁଥିଲା ।

ବଡ଼ଭାଉ ଯେତେବେଳେ ତାଙ୍କ ଶ୍ୱଶୁରଘରୁ ଟିକି ପିଲାଟିକୁ କୋଳରେ ଧରି ଆସି ପହଞ୍ଚିଲେ ମୁଁ ତାଙ୍କର ସବୁ କାମ ହାତେ ସମ୍ଭାଳି ନେଲି । ସେ ମଧ୍ୟ ଖୁବ ଖୁସି ହେଲେ । ମା ଧିରେ ଧିରେ ମୋ ଉପରେ ନିର୍ଭର କରିବାରେ ଲାଗିଲେ ।

ସାଧନା ଏବଂ ଆରାଧନା ଭାଉ ଯେତେବେଳେ ଛୁଟିରେ ଘରକୁ ଆସୁଥିଲେ ଆମର ଖୁବ ମଜା ହେଉଥିଲା । ଆମେ ତିନିଜଣ ଖୁବ ସାଙ୍ଗ ହୋଇ ମଜା କରୁଥିଲୁ । କଣ୍ଢେଇ ଖେଳୁଥିଲୁ । ସାଙ୍ଗହୋଇ ଘରର କାମ ମଧ୍ୟ କରୁଥିଲୁ । ଛୁଟି ସରିଗଲେ ମୁଁ ପୁଣି ଏକୁଟିଆ ହୋଇଯାଏ । କିନ୍ତୁ ମାଆ ମତେ ସବୁବେଳେ ପାଖରେ ରଖୁଥିଲେ । ଯଦି କିଏ ମତେ କଣ କହୁଥିଲା ତେବେ ସେ ତାକୁ ବିରକ୍ତ ହେଉଥିଲେ । ସବୁଦିନ ସନ୍ଧ୍ୟାବେଳେ ସେ ମୋଠୁ ଗୀତ ଶୁଣନ୍ତି । ଧୀରେ ଧୀରେ ଭଲ ଖାଇ ପିଇ ମୁଁ ସୁନ୍ଦର ଏବଂ ସ୍ୱାସ୍ଥ୍ୟବତୀ ହେବାକୁ ଲାଗିଲି । ମୋ ଦେହରେ ଯୌବନର ଲକ୍ଷଣ ଦେଖାଦେଲା ।

ଭାଉମାନଙ୍କର ପୁରୁଣା ଲୁଗାପଟାକୁ ମୁଁ ପିନ୍ଧିବାକୁ ଆରମ୍ଭ କଲି । ମତେ ମତେ ବହୁତ ଖୁସି ଲାଗୁଥିଲା ଶାଢ଼ୀ ପିନ୍ଧିବାକୁ । ମୋତେ ଶାଢ଼ୀ ପିନ୍ଧିବାର ଦେଖି ପଡ଼ୋଶୀ ଲୋକମାନେ କେମିତି କେମିତି ଆଖିରେ ଅନାଇବାକୁ ଲାଗିଲେ, ଯେତେବେଳେ ମୁଁ ସଉଦା ଆଣିବାକୁ ଯାଉଥିଲି ସାହୁ ଦୋକାନୀ ମୋ ହାତଟାଣି ପକାଉଥିଲା ଆଉ ଯଲ୍‌ଦି ଛାଡୁନଥିଲା । ରାସ୍ତାଘାଟରେ ଲୋଫର ଲୋକେ ନାନା

ପ୍ରକାର ଟିପ୍ପଣୀ ମାରୁଥିଲେ । ମୋ ମନରେ ନୂଆ ନୂଆ ଭାବନା ଗଜୁରି ଉଠୁଥିଲା ମୁଁ ପ୍ରଥମେ ପ୍ରଥମେ ଏସବୁଥିରେ ଖୁସି ହେଉଥିଲି । ଗଳ୍ପ କାହାଣୀ, ଉପନ୍ୟାସ ଇତ୍ୟାଦି ପଢିବାରେ ମୋର ବେଶୀ ସମୟ ଯାଉଥିଲା । ଏବେ କାମରେ ମୋର ଆଉ ଆଗପରି ମନ ଲାଗିଲାନି । କାମରେ ଭୁଲ ହେବାକୁ ଆରମ୍ଭ କଲି । ମାଁ ମତେ ବେଳେବେଳ ବୁଝାନ୍ତି, ଗାଳିମଧ ଦିଅନ୍ତି । ମୁଁ ଅଧିକାଂଶ ସମୟ ନୂଆ ନୂଆ କଳ୍ପନାରେ ମଜ୍ଜି ରହୁଥିଲି । ମିଲ୍‌ରେ ଯେତେବେଳେ ଉତ୍ସବ ହେଉଥିଲା ମୁଁ ପୁରାପୁରି ନିଜକୁ ନୂଆ ବେଶରେ ସଜାଇ ଉତ୍ସବ ଦେଖିବାକୁ ବାହାରି ପଡୁଥିଲି । ମୋତେ ଏମିତିଆ ବେଶରେ ଦେଖି ରାସ୍ତାରେ ଟୋକାମାନେ ଘେରି ଯାଉଥିଲେ । ମୋ ସାଥିରେ କଥାହେବାପାଇଁ ସେମାନଙ୍କଭିତରେ କଜିଆ ଲାଗି ଯାଉଥିଲା । ମୋ ପାଖକୁ ଲାଗି ଆସିବା ପାଇଁ ସେମାନଙ୍କ ଭିତରେ ପ୍ରତିଦ୍ୱନ୍ଦ୍ୱିତା ଲାଗି ଯାଉଥିଲା । ରାସ୍ତାରେ ଅନ୍ଧାର ଦେଖି ସେମାନଙ୍କ ଭିତରୁ ଜଣେ ଅଧେ ମୋତେ ହାତ ଧରି ଟାଣି ନେଇ ଯାଉଥିଲେ । ମୁଁ ଡରିକରି ଚିତ୍କାର କରି ଉଠୁଥିଲି ।

ମିଲ୍‌ର ବାର୍ଷିକ ଉତ୍ସବ ଉପଲକ୍ଷେ ହେଉଥିବା ନାଟକରେ ମୁଁ କେତେବେଳେ ସୀତା, କେତେବେଳେ ଶକୁନ୍ତଳା, କେତେବେଳେ ରାଣୀର ପାର୍ଟ କରୁଥିଲି । ଯେତେବେଳେ ମୁଁ ରାଣୀର ବେଶଭୂଷା ପିନ୍ଧି ଷ୍ଟେଜ୍ ଉପରେ ଠିଆହୋଇ ଯାଉଥିଲି ଲୋକେ ସେତେବେଳେ କହୁଥିଲେ ମୁଁ ସତରେ ଜୁଆଡ଼େ ରାଣୀପରି ଦେଖା ଯାଉଥିଲି । ଲୋକେ ମତେ ଷ୍ଟେଜ ଉପରେ ଦେଖି ଖୁସିରେ ତାଳି ମାରୁଥିଲେ । ପିଲାଠାରୁ ଆରମ୍ଭ କରି ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କ ନଜର ମୋ ଉପରେ ଲାଗି ରହୁଥିଲା । ମୁଁ ନିଜ ରୂପ ଗୁଣର ପ୍ରଶଂସା ଶୁଣି ଫୁଲି ଉଠୁଥିଲି ।

ମିଲ୍‌ର କମ୍ପାନୀ ବାବୁ ଯଦି କେତେବେଳେ ବାଟରେ ଦେଖା ହୋଇ ଯାଆନ୍ତି, ତ କହନ୍ତି — "ଆରେ ବାଘୁଆ ଝିଅ କେତେବେଳେ ବସାକୁ ଆସିବୁ, କାମ ଅଛି ।"

ମୁଁ ହସି ଦେଉଥିଲି । ମୋର ଇଆଡ଼େ ସିଆଡ଼େ ଯିବା ଦେଖି ମା ବେଶି ରାଗୁନଥିଲେ ଯଦିଓ ସେ ସବୁ ବୁଝୁଥିଲେ । ବେଳେବେଳେ କହୁଥିଲେ-

"ତୁ ତ ମୋର ହେଡ଼ଙ୍କେଷ୍ଟ, ସବୁବେଳେ ମୋ ପାଖରେ ରହିବୁ, ଇଆଡେ ସିଆଡେ ବୁଲୁଛୁ କାହିଁକି ?"

ମୁଁ ତାଙ୍କର ଚିଠିପତ୍ର ଲେଖୁଥିଲି, ହିସାବ ମଧ୍ୟ କରି ଦେଉଥିଲି । ମା ପାଖ ପଡ଼ୋଶୀ ଲୋକମାନଙ୍କୁ ହୋମିଓପାଥି ଔଷଧ ମଧ୍ୟ ଦେଉଥିଲେ । ମୁଁ ସେଥିରେ ତାଙ୍କୁ ମଧ୍ୟ ସାହାଯ୍ୟ କରୁଥିଲି । କିନ୍ତୁ ମୋର ମନ ସବୁବେଳେ ଚଞ୍ଚଳ ରହୁଥିଲା । ମୁଁ ଟିକିଏ ସମୟ ପାଇଲେ ବାହାରକୁ ଚାଲିଯାଉଥିଲି ।

ଦଶହରାରେ ମାଙ୍କଠାରୁ ପଇସା ନେଇ ମୁଁ ଖୁବ୍ ମଜାରେ ବୁଲାବୁଲି କରୁଥିଲି— ସୌଖିନ ଜିନଷ ଯଥା ସ୍ନୋ, ପାଉଡ଼ର, ଲିପ୍‌ଷ୍ଟିକ, ନେଲ୍‌ପଲିସ୍ ଇତ୍ୟାଦି କିଣୁଥିଲି । ଜୀବନରେ ପ୍ରଥମଥରପାଇଁ 'ଅନାର କଲି' ସିନେମା ଦେଖିଲି । ମୋତେ ସେ ସିନେମା ଏତେ ଭଲ ଲାଗିଥିଲା ଯେ ମୁଁ ଦିନ ରାତି ତାକୁ ହିଁ ସ୍ୱପ୍ନ ଦେଖିଲି । ସେ ସିନେମାକୁ ଆଉଥରେ କମ୍ପାନୀର କିରାଣୀ ବାବୁଙ୍କ ସହିତ ଦେଖିବାକୁ ମଧ୍ୟ ଭୁଲି ନଥିଲି । ମୁଁ ନିଜକୁ ଅନାରକଲି ବୋଲି ଭାବୁଥିଲି ।

ମୋର ସବୁ ଆଚ୍ଛୁର ବ୍ୟବହାର ଦେଖି ମା ମଧ୍ୟ ସନ୍ଦେହ କରିବାକୁ ଆରମ୍ଭ କଲେ । ଦିନେ ସେ ବାପୁଙ୍କୁ ଡାକି କହିଲେ- "ଶ୍ରୀକାନ୍ତ ! ବର୍ତ୍ତମାନ ତୋ ଝିଅ ବଡ଼ ହୋଇ ଗଲାଣି, ତାକୁ ଗୋଟିଏ ଭଲ ପାତ୍ର ଖୋଜି ବାହା କରିଦେ, ଯାହା ସାହାଯ୍ୟ ଦରକାର ହେବ ଆମେ ଦବୁଁ ।"

—o—

## ॥ ଦ୍ୱିତୀୟ ଅଧ୍ୟାୟ ॥

ଯେତେବେଳେ ବାପୁ ଆସି ମାଙ୍କ କାନରେ କଣ ସବୁ କହିଲେ, ମା ମତେ ଡାକି ହସି ହସି କହିଲେ, "ଆରେ ବାବୁଆ ଭଲକରି ଗାଧୋଇପଡ଼୍, ଆଉ ପରିଷ୍କାର ଲୁଗାପଟା ପିନ୍ଧି ବାପୁଙ୍କ ସାଙ୍ଗରେ ଘରକୁ ଯାଆ, ତମ ଘରକୁ କୁଣିଆଁ ଆସିଛନ୍ତି।"

ବାପୁଙ୍କ ମିଠା ମିଠା କଥା ଶୁଣି ମତେ ଲାଗିଲା "ଏହା ଭିତରେ ନିଶ୍ଚୟ କିଛି କଥା ଅଛି।"

ମୁଁ ଯେତେବେଳେ ଘରେ ପହଞ୍ଚିଲେ, ମାଆ ମତେ ଖୁବ୍ ଆଦର ଯତ୍ନର ସହ ସ୍ୱାଗତ କଲେ। ବାଳକୁ ଭଲଭାବେ ତେଲ ଲଗାଇ କୁଣ୍ଡାଇ-ଦେଲେ, ନିଜର ସବୁଠୁଁ ବେଶି ଦାମୀ ଶାଢ଼ୀ ମତେ ପିନ୍ଧାଇ ଦେଲେ। ଅଳଙ୍କାର ମଧ୍ୟ ପିନ୍ଧାଇଦେଲେ। ବାହାର ଅଗଣାରେ କିଛି ଲୋକ କଥା ହେଉଥିଲେ। ମୁଁ ବୁଝି ପାରିଲି, ମତେ କିଛି ଲୋକ ଦେଖିବାକୁ ଆସିଛନ୍ତି। ମୁଁ ଜାଣିଲି ଏ ନିଶ୍ଚୟ ବାହାଘରର ମାମଲା।

ଯେତେବେଳେ ସାଧନାର ବଡ଼ ଭଉଣୀ ଆରାଧନା ଅପାର ବାହାଘର କଥା ମୋର ମନେ ପଡ଼ିଲା। ବ୍ୟାଣ୍ଡବାଜା, ବଢ଼ିଆ ଭୋଜି, ବଢ଼ିଆ ଜନ୍ତଘର ସ୍ୱପ୍ନରେ ମୁଁ ବିଭୋର ହୋଇଗଲି। ମୋ ସ୍ୱପ୍ନର ରାଜକୁମାର ମୋ ସାମ୍ନାରେ ଆସି ଠିଆ ହୋଇଗଲେ।

ମୁଁ ଥାଳିରେ ଜଳଖିଆ ନେଇ ଯେତେବେଳେ ତାଙ୍କ ସାମନାକୁ ଗଲି, ସେମାନେ ମତେ ଦେଖି କିଛିକ୍ଷଣ ରହିଗଲେ । ମତେ ଚୁପ୍ ହୋଇ କେତେ ସମୟ ପର୍ଯ୍ୟନ୍ତ ଅନେଇ ରହିଲେ । ଫୁଲପରି ଚେହେରା, ଦୁଧପରି ଗୋରା ରଙ୍ଗ, ସୁନାପରି ଚକ୍ ଚକ୍ କରୁଥିବା କେଶରାଶି । ଏ ସବୁ ବୋଧେ ସେମାନେ କେବେ ଦେଖି ନଥିବେ । ମତେ ଯେପରି ସାତସମୁଦ୍ର ପାରହୋଇ ରାଜକୁମାରୀଟିଏ ଆସି ତାଙ୍କ ସମ୍ମୁଖରେ ଠିଆ ହୋଇ ଯାଇଛି । ସେମାନେ କିଛି ମାଗିଲେ ନାହିଁ, "କହିଲେ, ଆମର ଆଉ କିଛି ଦରକାର ନାହିଁ, ସବୁ କିଛି ଆମେ ପାଇ ଯାଇଛୁଁ ।"

ପୁଣି ବାପୁ ମାଆଙ୍କୁ କହୁଥିଲେ, "ଭଲ ଘରଦ୍ୱାର ସବୁ ଅଛି । ଝିଅ ଆମର ଯାଇ ଆରାମରେ ରହିବ ।

ମୁଁ ଯେତେବେଳେ ପୁଣି ମାଆଙ୍କ (ସାଧନାର ମାଆ) ଘରକୁ ଫେରିଆସେଁ, ଝିଅମାନେ ମତେ ଘେରିଗଲେ, ପଚାରିଲେ, ସତ କହ ତୋର ବର କେମିତିଆ ? କିନ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ତାଙ୍କୁ ଦେଖିନଥିଲି, କହି-ଆଆନ୍ତି କେମିତି ? ବଡ଼ଭାଇ ଏବଂ ବାପା ଆସିଥିଲେ । କଣ ବା କହିବି ? ଯାହା କହିବି ସେ ସବୁ କଳ୍ପନାର କଥା ହୋଇଯିବ । ମୁଁ ଚୁପ୍ ରହି କେବଳ ହସିଲି, ବର୍ତ୍ତମାନ ମୁଁ ସବୁବେଳେ ଚିନ୍ତାରେ ନିମଗ୍ନ ରହିଲି । କାମଦାମରେ ଆଉ ମନ ଲାଗିଲା ନାହିଁ । ଦଶହରା ବେଳେ ଯେଉଁ ସିନେମା ଦେଖିଥିଲି ସେ ବିଷୟରେ ଚିନ୍ତାକଲି ଏବଂ ସେହି ସିନେମାର ନାୟକ ଯାଗାରେ ତାଙ୍କୁ ଏବଂ ନାୟିକା ଯାଗାରେ ନିଜକୁ ରଖି ମନେ ମନେ ଖୁସି ହେଲି ।

ଧୀରେ ଧୀରେ ବିବାହ ସମୟ ନିକଟ ହୋଇ ଆସିଲା, ଘରେ ମିଠାଇ ଇତ୍ୟାଦି ଭାରି ସଜ ତିଆରି ଆରମ୍ଭ ହୋଇଗଲା । ମିଲ୍‌ରୁ ମୋତେ ବହୁତ ଜିନିଷ ମିଳିଲା । ମାଆ ଆଉ ଅନ୍ୟ ଝିଅମାନେ ମତେ ଅନେକ

ଜିନଷ ଦେଲେ, ଶାଢ଼ୀ ଅଳଙ୍କାର, ଚୂଡ଼ୀ ଇତ୍ୟାଦିରେ ମୋ ଦେହ ପୂର୍ଣ୍ଣ ହୋଇଗଲା । କିନ୍ତୁ ମାଆଙ୍କ ମନରେ ଖୁବ ଦୁଃଖ ହେଉଥିଲା ଯେ ବନ୍ଧଆ ଗୃଲିଯିବ । ମୋ ହୃଦୟ ମଧ୍ୟ ଦୁଃଖରେ ଭାଙ୍ଗି ପଡ଼ୁଥିଲା । ସମସ୍ତଙ୍କୁ ଛାଡ଼ିବାକୁ ପଡ଼ିବ । ଖୁବ୍ ଜାକଜମକ୍ରେ ମୋର ବିବାହ ହୋଇଗଲା । ବାପାଙ୍କ ପାଖରେ ଏତେ ପଇସା କୁଆଡୁ ଆସିଲା ମୁଁ କହିପାରିବିନି କିନ୍ତୁ ବାପା ବହୁତ ଆଡ଼ମ୍ବରରେ ମୋ ବାହାଘର କରିଦେଲେ ।

ବିଦାୟ ସମୟରେ ମା ମୋତେ ଆଗରୁ କହିଦେଇଥିଲା ବହୁତ ଜୋର୍ରେ କାନ୍ଦିବାକୁ, ନହେଲେ କୁଆଡ଼େ ଲୋକହସା ହୁଅନ୍ତି । ମୁଁ ଗଲା ଫଟାଇ ଚିତ୍କାର କରି କାନ୍ଦିଲି । କାନ୍ଦ ନମାଡ଼ିଲେ ମଧ୍ୟ ମୁହଁରେ ରୁମାଲ୍ ଦେଇ କାନ୍ଦିବା ଆରମ୍ଭ କରିଦେଲି ।

ବାହାଘରର ସବୁ ରକମ ନୀତି ନିୟମ ପାଳନ କଲାପରେ ମୁଁ କାନ୍ଦି କାନ୍ଦି ଯେତେବେଳେ କ୍ଳାନ୍ତହୋଇ ପାଲିଙ୍କିରେ ଚଢ଼େଁ ଏବଂ ଯେତେବେଳେ ପାଲିଙ୍କି ଘର ଛାଡ଼ିଲା, ସତରେ ମୋତେ ନିଦ ଆସିଯାଇଥିଲା । ଜଣାନାହିଁ କେତେ ସମୟ ପର୍ଯ୍ୟନ୍ତ ମୁଁ ଶୋଇପଡ଼ିଲି; କିନ୍ତୁ ଯେତେବେଳେ ମୋ ନିଦ ଭାଙ୍ଗେ ମୁଁ ଦେଖେଁ ଗୋଟେ ଗଛମୂଳେ ପାଲିଙ୍କି ଥୁଆ ହୋଇଛି । ପାଖରେ ଥିବା କୂଅ ମୂଳରୁ କଥାବାର୍ତ୍ତାର ଶବ୍ଦ ଶୁଣା ଯାଉଛି । ବାହାରୁ କିଏ ଜଣେ ମତେ ଗ୍ଳାସଟିଏ ବଢ଼ାଇ ଦେଇ କହିଲା— "ବୋହୂ ନିଅ, ତମ ପାଇଁ ଶରବତ୍ ଆଉ ଦହି ଚୂଡ଼ା ।"

ଖାଇପିଇ ମୋ ଦେହରେ ଜୀବନ ପଶିଲା । ମୁଁ ସବାରୀରେ ଥିବା ଛିଦ୍ର ଦେଇ ବାହାରକୁ ଅନେଇବାପାଇଁ ଚେଷ୍ଟାକଲି । ବୟସ୍କ ଲୋକମାନେ ଧୋତି କମିଜ୍ ପିନ୍ଧି ପଗଡ଼ି ବାନ୍ଧି ଠିଆହୋଇଥିଲେ । ମୋର ସପନର ରାଜକୁମାର ବୋଧହୁଏ ସେମାନଙ୍କ ମେଳରେ ହିଁ ଥିବ । ମୋର ମନଟା

ଚହଲ ଗଲା । ଘଣ୍ଟା ନ ହେଉଣୁ ଆମେ ସବୁ ଲୌରିଆ ଗାଁରେ ପହଞ୍ଚିଗଲୁ । ସେଇଠି ଥିଲା ମୋର ଶ୍ୱଶୁର ଘର ।

ସ୍ତ୍ରୀଲୋକମାନେ ବନ୍ଦାଣ ଗୀତଗାଇ ମୋତେ ସ୍ୱାଗତ କଲେ । ସବାଙ୍କରୁ ମୋତେ କୋଳକରି ନେଲେ । ପୁଣି ଘନ ଘଣ୍ଟଘଣ୍ଟା କଣ ସବୁ ପୂଜା ଆରାଧନା କଲେ । ଗୋବର ପୂଜା, ମାଟି ପୂଜା, ଦୂବ ବରକୋଳି ପୂଜା ଇତ୍ୟାଦି ହେଲା । ଗାଁର ବୁଢୀ ସ୍ତ୍ରୀମାନଙ୍କ ମୁଣ୍ଡିଆ ମାରି ମାରି ମୋର ଅଣ୍ଟା ପିଠି ଦରଜ ହୋଇଗଲା । ମୁଣ୍ଡ ବ୍ୟଥିବା ଆରମ୍ଭ ହୋଇଗଲା । ମୋତେ ଏତେ କଷ୍ଟହେଲା ଯେ ମୁଁ କାନ୍ଦିବା ଆରମ୍ଭ କରିଦେଲି । ଶ୍ୱଶୁରଘର ଅନ୍ୟମାନେ କହିଲେ, ଆହା, ବହୁଡ଼ିର ବାପଘର ମନେ ପଡ଼ୁଛି ବୋଧେ ।

ସେମାନେ ସମସ୍ତେ ମୋତେ ବୁଝାଉଥିଲେ । ଏତ ତୋରଘର, ଏମାନେ ତୋର ବାପା ମା, ତୁ ଏମିତି ବେସ୍ତ ହେଲେ ଚଳିବ ? ତଥାପି ମୋର ଭୀଷଣ କଷ୍ଟ ହେଉଥିଲା ଏବଂ ମୁଁ କାନ୍ଦୁଥିଲି । ଏପରି ଅବସ୍ଥା ଦେଖି ମୋର ଦେଢ଼ଶାଶୁ ଏବଂ ନଣନ୍ଦଙ୍କୁ ଭଲ ବୁଦ୍ଧି ଦେଖାଗଲା — ସେମାନେ ମୋତେ ଉଠାଇ ଘର ଭିତରକୁ ନେଇଗଲେ । ମୋର ଲୁଗା ବଦଳାଇ ଦେଲେ । ମନ ଭୁଲାଇବା ପାଇଁ ମୋ ପାଖରେ ବସି ଦୁନିଆର କଥା ଗପିଲେ । ମୋର ଇଚ୍ଛା ହେଉଥିଲା ଏମାନେ ସବୁ ଘରୁ ଚାଲିଯାଆନ୍ତେ କି, ମୁଁ କବାଟ ବନ୍ଦକରି ଶୋଇ ପଡ଼ନ୍ତି । କିନ୍ତୁ ମୁଁ ଜାଗ୍ରତ ଥିଲି । ଏହି ସମୟରେ ପାଖଘରୁ ହସର ଲହରି ଛୁଟି ଆସିଲା । ମୋର ଭାବନାରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା – ମୁଁ ଦେଖିଲି ମୋ ସାମନାରେ ଜଣେ ଯୋଦ୍ଧା ପଞ୍ଜାବ ପିନ୍ଧା ପତଳା ଲୋକ, ଆଖିରେ କଜଳ, ବେକରେ ଫୁଲମାଳ ପିନ୍ଧି ଠିଆ ହୋଇଛନ୍ତି । ପଛପଟେ ନଣନ୍ଦମାନେ ହସଗୋଳ କରୁଛନ୍ତି ।

ପ୍ରଚ୍ଛପଟୁ ନଣନ୍ଦମାନେ ଧକ୍କାଦେଇ ତାଙ୍କୁ ଘର ଭିତରକୁ ପେଲିଦେଲେ ଏବଂ ବାହାରପଟୁ କବାଟ ବନ୍ଦ କରିଦେଇ ଜୋର୍‌ରେ ହସି-

ଉଠିଲେ । ତାଙ୍କ ଚେହେରା ଦେଖି ମା କାଳୀଙ୍କ ପାଦରେ ବଳିପଡ଼ିବାକୁ ଯାଇଥିବା ଛେଳିର ଅବସ୍ଥା କଥା ମୋର ସ୍ମରଣ ହେଲା ।

"ଏଇ ତେବେ ମୋର ସପନର ରାଜକୁମାର ?" ଭାଗ୍ୟ ତେବେ ମୋ ସାଙ୍ଗରେ ଏମିତିଆ ଦାଉ ସାଧିଲା । ମୋତେ ମୋ ନିଜ ଉପରେ, ବାପାଙ୍କ ଉପରେ, ଘରେ ସମସ୍ତଙ୍କ ଉପରେ ଭୀଷଣ ରାଗ ହେଲା । ମୁଁ ହଠାତ୍ ନିଜର ସ୍ଥିତି ଭୁଲିଯାଇ କହିଲି —"ଖବରଦାର୍ ଯଦି ମୋ ଦେହରେ ହାତ ଲଗାଅ ତ ··· । ମୋର ଦେହ ଠିକ୍ ନାହିଁ । ମୋର ମୁଣ୍ଡ ଭୀଷଣ ବିନ୍ଧୁଛି··· ମୋ ପାଖକୁ ଆସ ନାହିଁ ।"

ସେ ମଧ୍ୟ ମୋଠାରୁ ଦୂରରେ ବସିଲେ । ବୋକାଙ୍କ ପରି ମୋ ମୁହଁକୁ ଦୂରରୁ ଚାହିଁ ରହିଲେ — ପୁଣି ଧୀର ସ୍ୱରରେ କହିଲେ "ଆସ, ମୁଁ ତମ ମୁଣ୍ଡ ଚିପି ଦେବି — ଆରାମ ଲାଗିବ ।"

ମୋର ଦୟା ହେଲା । ଠିକ୍ଅଛି କିନ୍ତୁ ଆଉ ଆଗକୁ ବଢ଼ିବ ନାହିଁ । ସେ ମୁଣ୍ଡ ହଲାଇ ହଁ କଲେ । ମୁଁ ଜାଣିନି କେତେ ସମୟ ପର୍ଯ୍ୟନ୍ତ ସେ ମୋ ମୁଣ୍ଡକୁ ଚିପିଲେ । ମୁଁ ଶୋଇ ପଡ଼ିଲି । ଅନ୍ଧାରୁ ଅନ୍ଧାରୁ ଦରଜାରେ ଖଟ୍ ଖଟ୍ ଆବାଜ ହେଲା— ମୁଁ ଧଡ଼ ପଡ଼ ହୋଇ ଉଠି ଦେଖେଁତ ନଣନ୍ଦ ଠିଆ ହୋଇଛନ୍ତି ।

ଭାଉଜ ! ଚାଲ ଏବେ ଯାଇ ପଡ଼ିଆରେ ନିତ୍ୟକର୍ମ ସାରି ଆସିବା, ସକାଳ ହେଲେ ସବୁ ଲୋକ ଉଠିବେ— ସେତେବେଳେ ତମେ ଆଉ ଘରୁ ବାହାରି ପାରିବନି ! ପୁଣି ତା ପରେ ବଗିଚାକୁ ଆସି କୂଅରେ ଗାଧୁଆ ପାଧୁଆ କାମ ସାରିଦବାକୁ ପଡ଼ିବ ।

ଏ କଥା ଶୁଣି ମୋର ମନଟା ଏକଦମ ଷୁଣ୍ଣ ହୋଇଗଲା । ଏ କଣ ? ମୁଁ ପୁଣି ପଡ଼ିଆକୁ ଯିବ, କୂଅରେ ଗାଧୋଇବ ? ପିଲାଦିନୁ କୂଅ ପୋଖରୀ ପଡ଼ିଆ ଦେଖିନାହିଁ । ଆମର ହେଠି ଘର ଭିତରେ ଗାଧୁଆଘର । ମୁଁ ବାହାରେ ଗାଧୋଇବା ଝାଡ଼ାଯିବା କାମ କେବେ କରିନାହିଁ । ସତରେ ମୋର ଭୀଷଣ ରାଗ ହେଲା ।

ମୁଁ ଯିଦ୍ ଧରିଲି । କହିଲି, "କାହିଁକି ମୁଁ ଜମା ଯିବ ନାହିଁ ପଡ଼ିଆକୁ, ମୋ ବାପଘରେ ତ ବାଥ୍‌ରୁମ୍‌ ଥିଲା ।"

ଦିନ ହେଲା, ଘରେ ସମସ୍ତେ ବ୍ୟସ୍ତ ହେଲେ । ମୁଁ ଗାଧୋଇଲି ନାହିଁ, ଖାଇଲି ନାହିଁ । ସମସ୍ତେ ବୁଝାଇଲେ । ଶ୍ୱଶୁର ଗାଳିଦେଲେ କିନ୍ତୁ ମୁଁ କାହାକଥା ଶୁଣିଲି ନାହିଁ । ସେମାନେ ଶେଷକୁ ବାଧ୍ୟହୋଇ ଘରର ବାଡ଼ିପଟେ ଟାଟି ଘେରାଇ ପାଇଖାନା କଲେ ଆଉ ଗାଧୁଆଘର ମଧ୍ୟ କଲେ । ମୁଁ ତା ପରେ ଗାଧୋଇବାକୁ ଗଲି ।

ମୋର ସ୍ୱାମୀ ମଧ୍ୟ ବିରକ୍ତ ହେଲେ । ଘରେ ସମସ୍ତେ ଫୁସୁର୍ ଫାସ ହେଲେ । କହିଲେ, "ପାଉଥା ମଜା ସୁନ୍ଦରୀ ସ୍ତ୍ରୀ, ପରୀ ପରି ଚେହେରା, ଗର୍ବରେ ଫାଟିପଡ଼ୁଛୁ ।"

ଘରେ ବଡ଼ମାନେ ମତେ ଛି ଛି କଲେ । କିନ୍ତୁ ନଣନ୍ଦମାନେ ମତେ ଘେରି ରହିଲେ । ମୋଠୁ ଗୀତ ଶୁଣିଲେ । ସିନେମା କଥା ଶୁଣିଲେ । ମତେ ନଖ ପାଲିସି ଲଗାଇ ଦେଲେ, ମୁଁ ହିରେ ପାଉଡର୍ ଲଗାଇ ଦେଲେ ।

ଧନସାରୀ ଓଢ଼ଣୀ ତଳେ ଘର ଭିତରେ ମୋର ଦିନ କଟୁଥିଲା । ସତେ ଯେପରି ଜେଲଖାନରେ ମୁଁ ବନ୍ଦୀହୋଇ ରହିଥିଲି । ମାଙ୍କ ଘରର ଆରାମ କଥା ତଥା ବିଜୁଳି ପଙ୍ଖା, ରେଡିଓ, ଗୀତ କଥା ସବୁ ମନେ ପଡ଼ିଲା ।

ସକାଳ ସହରୁ ଘରେ କାମଦାମ ସବୁ ଆରମ୍ଭ ହୋଇ ଯାଇଥିଲା । ମତେ କେହି କାମ କରିବାକୁ କହୁନଥିଲେ । ମୁଁ ମଧ୍ୟ ସେମାନଙ୍କ ସହ ମିଶିପାରୁ ନ ଥିଲି । ଶାଶୂ ମୋତେ ବେଳେବେଳେ ଶୁଣାଇ ଦେଉଥିଲେ, "ଏ ଶଙ୍ଖମଲ୍ଲମଲ ଚେହେରାକୁ ନେଇ ମୁଁ କ'ଣ ଚାଟିବି । ଏତ କୌଣସି କାମକୁ ନୁହେଁ ।"

ଶ୍ୱଶୁର କହୁଥିଲେ—"ଧୈର୍ଯ୍ୟ ଧର, ସବୁ ଠିକ୍ ହୋଇଯିବ ।"

ମୋର ସବୁ ରାଗ ସ୍ୱାମୀଙ୍କ ଉପରେ ରାତିରେ ଶୁଝୁଥିଲି । ବିଚରା ବଡ଼ ସାଧାସିଧା ଲୋକ ଥିଲେ । ସେ ମୋ ସାଙ୍ଗରେ କେବେ ଜବରଦସ୍ତି କରୁ ନ ଥିଲେ । ବଡ଼ ପ୍ରେମରେ କଥାବାର୍ତ୍ତା କରୁଥିଲେ । ପ୍ରେମ କାହାଣୀ ଶୁଣାଉଥିଲେ । ମୋ' ପାଇଁ ବରିକୁଳୁ, ଆମ୍ବ, ପିଜୁଳି ଇତ୍ୟାଦି ଆଣି ଦେଉଥିଲେ ।

ଧୀରେ ଧୀରେ ମୁଁ ତାଙ୍କୁ ଭଲପାଇବାକୁ ଆରମ୍ଭ କଲି । ଏଥର ରାତିରେ ମୁଁ ତାଙ୍କୁ ମୋ ପାଖରେ ଶୋଇବାକୁ ଅନୁମତି ଦେଲି । କିନ୍ତୁ ତାଠୁଁ ଆଗକୁ ବଢ଼ିବାପାଇଁ ମୁଁ ସୁଯୋଗ ଦେଉ ନ ଥିଲି, ସେ ମଧ୍ୟ ମୋତେ ବାଧ୍ୟ କରୁନଥିଲେ ।

ଦିନେ ସକାଳୁ ମୋ ସ୍ୱାମୀ କହିଲେ—"ମୁଁ ଦୁଇତିନି ଦିନ ପାଇଁ କେତଆମର୍ଣ୍ଣିକୁ ଧାନ ବିକିବା ପାଇଁ ଯାଉଛି ।"

ସତରେ ମୋ ମନଟା ଖଟା ହୋଇଗଲା । ଘର ଭିତରେ ସେ ହିଁ ମୋର ଏକମାତ୍ର ସାଥୀ । ମୁଁ ତାଙ୍କୁ କହିଲି, "ମୁଁ ମଧ୍ୟ ତମ ସାଙ୍ଗରେ ଯିବି । ମାଙ୍କୁ ଟିକେ ଦେଖିଆସିବି ।" ସେ ମତେ ସାଙ୍ଗରେ ନବାକୁ ଚାହିଁଲେ ମଧ୍ୟ ଘରେ ଅନୁମତି ମିଳିବ ନାହିଁ ଜାଣିଥିଲେ—ତେଣୁ ମତେ କହିଲେ, "ମୁଁ ଫେରିଆସେ, ପୁଣି ଭଲ ଦିନ ଦେଖି ତମକୁ ନେଇଯିବି ।"

ଜନହାର ମନଟା ନହାତ ଅନ୍ୟମନସ୍କ ରହିଲା । ରାତରେ ଚଞ୍ଚଳ ଖାଇପିଇ ଶୋଇବା ଘରକୁ ଗ୍ଲଲଗଲ । ଘରଟା ନହାତ ଖାଲି ଖାଲି ଲଗିଲା । ଘରେ ସେ ନଥିଲେ । ତାଙ୍କ କଥାଟା ମୋର ଖୁବ୍ ମନେ ପଡ଼ିଲା । ମୁଁ ତାଙ୍କର ଶୁଭ ମନାସିଲି । ଭାବିଲି ଏଥର ସେ ଆସିଲେ ଆଉ ତାଙ୍କ ମନରେ ଦୁଃଖ ଦେବ ନାହିଁ । ତାଙ୍କୁ ଏଥର ମୋର ସମସ୍ତ ଅର୍ପଣ କରିଦେବ ।

ରାତରେ ହଠାତ୍ ଏ ସବୁ ଦୃଷ୍ଟିଭ୍ରାରେ ମୋର ନଦ ଭାଙ୍ଗିଗଲା— ମୁଁ ଅନୁଭବକଲି, ସତେ ଯେପରି ମୋ ଗ୍ରୁତଉପରେ କିଏ ଜଣେ ବସିଛୁ— ମୁଁ ଯେତେ ଚେଷ୍ଟା କଲେ ମଧ ସେ ବୋଝକୁ ଉଠାଇ ପାରିଲି ନାହିଁ — ଏକ ବଳିଷ୍ଠ ଶରୀର ମୋ ବ୍ଲାଉଜ୍‌ର ବୋତାମ ଖୋଲିବାରେ ବ୍ୟସ୍ତ ! ଅନ୍ଧାରରେ ମୁଁ ତାକୁ ଚହ୍ନି ପାରିଲି ନାହିଁ । ମୁଁ ଭାବିଲି ଏଇଟା ସ୍ୱପ୍ନ ନୁହେଁ ତ ! ମୋର ସବୁଚେଷ୍ଟା ବିଫଳ ହେଲା— ମୁଁ ପାଟି କରିବା ପାଇଁ ଚେଷ୍ଟା କଲି । ସେ ମୁହଁ ଉପରେ ହାତ ରଖି କହିଲା 'ବୋହୂ ! ପାଟି କରନା, ମୁଁ ଏ ଘରର ଲୋକ କେହି ବାହାରର ନୁହେଁ । ମୁଁ ତୋର ଶ୍ୱଶୁର । ତୁ ଖୁସିରେ ରାଜି-ହୋଇଯା । ଯଦ ଭଲରେ ରାଜି ନ ହେବୁ ତା ହେଲେ ତୋ ତଣ୍ଟି ଚିପି ମାରି ଦେବ ଏବଂ ବାଡ଼ିଆଡ଼େ ଗାତ ଖୋଳି ପୋତ ଦେବ । କେହି ଜାଣି ପାରିବେନ ।

ମୁଁ ଚିତ୍କାର କରିବାପାଇଁ ଶତଚେଷ୍ଟା କରି ବିଫଳ ହେଲି ।

ସେ କହିବାରେ ଲଗିଲେ, " ପୁରା ହଜାରେ ଟଙ୍କା ତୋ ବାପକୁ ଦେଇ ତୋ ଭଳିଆ ସୁନ୍ଦର ଚଜଟିଏ କିଣି ଆଣିଛୁ, ସମସ୍ତଙ୍କ କାମରେ ଆସିବ । ବର୍ତ୍ତମାନ ତୁ ଫୁଟାଣି ଦେଖାଉଛୁ । କେତେ କେତେ ନାରୁଆ ଗାଈଙ୍କୁ ମୁଁ ସମ୍ଭାଳ ନେଇଛୁ ଆଉ ତୁବା କ ଛାର !"

ଏମିତିଆ କଥା କହି ସେ ତାଙ୍କର କାମ ହାସଲ କରିନେଲେ । ନଜର କାମନାକୁ ଚରିତାର୍ଥ କରିନେଲେ — ମୁଁ ବେହୋସ ହୋଇ ପଡ଼ିରହିଲି । କିଛି କରିପାରିଲି ନାହିଁ । ଆଖିଖିଷ୍ଟରେ

ଚହ୍ନି ଲପରି ସେ ମୋତେ ଚହ୍ନି ଗ୍ଲଗଲା । ସାରାରାତ ମୁଁ କାନ୍ଦି କାନ୍ଦି ପଡ଼ିପଡ଼ିଲି । ମୋର ଭାଗ୍ୟକୁ ନିନ୍ଦିବାରେ ଲାଗିଲି । ଦେବତା ତୁଲ୍ୟ ଲୋକ ଏଭଳିଆ ନର୍କର ସଇଁଷ ସାଜିପାରେ... ।

ସକାଳ ହେଲା । ମୋତେ ଘରୁ ନ ବାହାରିବାର ଦେଖି ନଣନ୍ଦ ଆସିଲା । ସେତେବେଳକୁ ପୁରୁଷଲୋକ ସବୁ କାମକୁ ବାହାରିଯାଇଥିଲେ । ରାତିର ଘଟଣା ବିଷୟରେ ବୋଧହୁଏ ଶାଶୁ କିଛି ସୂଚନା ପାଇଥିଲେ । ସେ ଉଗ୍ରଚଣ୍ଡୀ ରୂପ ଧାରଣ କରି ମୋ ଘରେ ଭିତରକୁ ପଶିଆସିଲେ ଆଉ ଚିତ୍କାର କଲେ "ଡାହାଣି. ରାକ୍ଷାଶୁଣି ମୋହିନୀ ରୂପରେ ଆସିଲୁ କଣ ମୋର ସନ୍ତରୁଣୀ ହେବୁ ବୋଲି । ସେ ନିଜ ସ୍ୱାମୀଙ୍କ ଉପରେ ରାଗିବେ କ'ଣ, ସବୁ ରାଗକୁ ମୋ ଉପରେ ଶୁଝାଇ ନେଲେ । ମୋତେ ଖୁବ୍ ପିଟିଲେ ଏବଂ ଦରମଲକର କବାଟକୁ ବାହାରୁ ତାଲା ଲଗାଇ ବାହାରି ଗ୍ଲଲଗଲେ ।

ଘରେ ସମସ୍ତଙ୍କୁ କହିଗଲେ କେହି ଏ ଡାଆଣୀକୁ ଖାଇବାକୁ ଦେବେନି, ଦେଖିବ...... ।

ମୋର ମନେ ନାହିଁ କେତେ ସମୟ ମୁଁ ବେହୋସ ହୋଇ ପଡ଼ି ପଡ଼ିଲି । ଯେତେବେଳେ ଆଖି ଖୋଲିଲି, ଦେଖିଲି ଅନ୍ଧାର ହୋଇ ଆସିଲାଣି । ବାହାରେ ଶବ୍ଦ ସବୁ ଶୁଣାଯାଉଥିଲା । ବୋଧହୁଏ ଖାଇବା ପିଇବା ଗ୍ଲୁଥିଲା । ମୋତେ ମଧ୍ୟ ଭୋକ ଲାଗିଲା । ଶୋଷରେ ମୋର ତଣ୍ଟି ଶୁଖି ଯାଉଥିଲା ।

ଧୀରେ ଧୀରେ ବୋଧହୁଏ ଘରର ରାତିକାମ ସବୁ ସରିଲା । ସମସ୍ତେ ଶୋଇବାକୁ ଗ୍ଲଲଗଲେ । ମୋତେ ଭୀଷଣ ଭୋକ ହେଉଥିଲା । କିନ୍ତୁ ମୋ କଥା ମୋ ଭିତରେ ରହିଗଲା । ଏହି ସମୟରେ ମୋର ଘରର

କବାଟ ଖୋଲି ସ୍ତ୍ରୀଟି ନିଜେ ଭିତରକୁ ଆସିଲା। ସେ ଲୋଟାଏ ପାଣି ଆଣି ମୋ ହାତକୁ ଦେଲା। ମୁଁ ଚୁପ୍‌ଚାପ୍ ହୋଇ ପାଣି ପିଇଦେଲି। ମୋ' ହାତରେ ସେ ଗୋଟିଏ ଗଣ୍ଠିଲି ଟିଏ ଦେଇ କହିଲା, "ଶୀଘ୍ର ଚାଲିଯାଅ, ଏଇଠୁ ଯେତେ ଶୀଘ୍ର ପାର ପଳେଇ ଯାଅ!"

ସେ ମୋତେ ପଛପଟ ଦରଜା ଦେଇ ବାହାରକୁ ନେଇଗଲା। ଏବଂ ଗାଁର ସୀମା ପାର କରିଦେଲା। ଅଲଗା ହେବା ବେଳେ କହିଲା, "ଏହି ରାସ୍ତାରେ ପାଖାପାଖି ଗୋଟେ ମାଇଲ ଚାଲିଲେ ତୁମେ ରେଲରାସ୍ତା ଦେଖିବ। ସେଇ ରେଳ ଲାଇନ କଡେ କଡେ ଗଲେ ସକାଳ ସୁଦ୍ଧା ତୁମେ ଘରେ ପହଞ୍ଚିଯିବ।

"ଯଦି ରାସ୍ତାରେ କିଏ ପଚାରିବ, ତୁମେ କହିବ, ମୁଁ ସକାଳର କର୍ତ୍ତବ୍ୟକର୍ମ ସାରିବା ପାଇଁ ବାହାରିଛି।"

ମୁଁ ଦୌଡ଼ିବା ଆରମ୍ଭ କରିଦେଲି, କାରଣ ମୁଁ ଚାହୁଁଥିଲି ଯେତେ ଶୀଘ୍ର ପାରେ ମୁଁ ଏ କଂସେଇ ଖାନାରୁ ମୁକୁଳିଯିବି। ପନ୍ଦର କୋଡ଼ିଏ ମିନିଟରେ ମୁଁ ରେଳଷ୍ଟେସନରେ ପହଞ୍ଚିଗଲି। ଭୋକ ଶୋଷରେ ବାଟ ଚାଲି ହେଉ ନ ଥିଲା। ଗଣ୍ଠିଲି ଖୋଲି ଦେଖେଁ ତ ସେଥିରେ କିଛି ଖାଦ୍ୟ ଥିଲା। ମୁଁ ଟିକିଏ ଦମ୍ ନେଇ ତାକୁ ଖାଇଲି। ପାଖରେ ଥିବା କୂଅରୁ ପାଣିଆଣି ପିଇଲି। ରେଳ ରାସ୍ତାକୁ ଧରି ଧରି ଚାଲିଲି। ଭୋରୁ ଭୋରୁ ରାଜନଗର ପହଞ୍ଚିଗଲି। କିନ୍ତୁ ପହଞ୍ଚିଗଲାପରେ ମୁଁ ଦ୍ୱିଧାରେ ପଡ଼ିଗଲି – କୁଆଡ଼େ ମୁଁ ଯିବି! ଏଇ ଚିନ୍ତାରେ ପଡ଼ିଗଲି। ମ୍ୟାନେଜରଙ୍କ ଘରକୁ ଯିବି, ନା ବାପାଙ୍କ ଘରକୁ ଯିବି, ଏହାହିଁ ଥିଲା ମୋର ସମସ୍ୟା।

ମନ କହିଲା ଯେଉଁ ବାପା ହଜାରେ ଟଙ୍କା ନେଇ ଝିଅକୁ ବିକି ଦେଇ ପାରନ୍ତି ତାଙ୍କ ପାଖକୁ ଯିବା ବ୍ୟର୍ଥ। ମା'ଙ୍କ ଘରକୁ ଯିବି। ସେହି କେବଳ ମୋତେ ଏ ରାକ୍ଷସଙ୍କ କବଳରୁ ରକ୍ଷା କରିପାରନ୍ତି। ମା'ଙ୍କ ଘରେ

ସମସ୍ତେ ସେତେବେଳକୁ ନିଦରୁ ଉଠୁଥିଲେ । ମୁଁ ଘରେ ପହଞ୍ଚିଗଲି । ମା'ଙ୍କର ପାଦତଳେ ଲୋଟିଗଲି—"ମା, ଆପଣ ମତେ ମାରିଦିଅନ୍ତୁ । ବିଷ ଦେଇଦିଅନ୍ତୁ ମୁଁ ମରିଯାଏଁ । କିନ୍ତୁ ମୁଁ ଆଉ ଶଶୁର ଘରକୁ ଯିବିନାହିଁ । ଦେଖନ୍ତୁ ନାଁ, ମତେ କିପରି ମାଡ଼ ହୋଇଛି । ମୋ ପ୍ରତି କିପରି ଦୁର୍ବ୍ୟବହାର କରାହୋଇଛି ।"

ମୁଁ ସବୁ କଥା କହିଗଲି । ମା ମୋଠୁ ସବୁ ଶୁଣି ଖୁବ ଦୁଃଖ କଲେ । ତାଙ୍କ ଆଖିରୁ ମଧ୍ୟ ଲୁହ ବୋହି ଆସିଲା । ସେ ମୁଣ୍ଡରେ ହାତ ରଖି କହିଲେ,—"ବନ୍ଦନା ତୁ ଡର ନାହିଁ । ତୋର କେହିବ କିଛି ଟିକିଏ ଅନିଷ୍ଟ କରିପାରିବେ ନାହିଁ । ସେ ଆସୁନା ଏଠିକି ମୁଁ ତାକୁ ଦେଖିନେବି ।"

ପରଦିନ ବାପାଙ୍କୁ ସାଙ୍ଗରେ ନେଇ ମୋ ଶ୍ୱଶୁର ମାଙ୍କ ପାଖରେ ପହଞ୍ଚିଲେ । ତାଙ୍କୁ ଦେଖି ମୁଣ୍ଡରେ ଅଗ୍ନି ଚଢ଼ିଗଲା । ମୁଁ ମୋ ନିଜ ଘରେ ଲୁଚିଲି । ସେମାନେ ଗଲାପରେ ମୁଁ ବାହାରକୁ ବାହାରିଲି— ପରେ ମୁଁ ଶୁଣିଲି ମା ତାଙ୍କୁ କୁଆଡେ ଖୁବ୍ ଗାଳିଦେଲେ । କହିଲେ, "ଖବରଦାର୍ ଆଉ ଯଦି ତମେ ଏଠିକୁ ଆସ ତେବେ ପୁଲିସ୍‌ରେ ଦେଇଦେବି, ବିଚାରୀକୁ ମାରିମାରି ଦରମରା କରିଦେଇଛ । ଆଉ ତମ ଘରକୁ ସେ ଜମା ଯିବ ନାହିଁ । ପୌତ୍ରର ସମ୍ବନ୍ଧ ହୋଇଥିବାରୁ ମୁଁ ତମକୁ ଏଥର ଛାଡ଼ିଦେଉଛି । ନହେଲେ ଦରୱାନ ଡକାଇ ତମକୁ ପିଟିପିଟି ବିଦା କରିଦେଇଥାନ୍ତି । ତମେ ମୋର ଝିଅର ଅବସ୍ଥା ଯେମିତି କରିଛ ତମର ଅବସ୍ଥା ମଧ୍ୟ ସେମିତି ହୋଇଥାନ୍ତା । ଯାଅ ଆଉ ତମେ ଏଠି ମୁହଁ ଦେଖାଅ ନାହିଁ ।"

ଏ ଘଟଣାର ଦୁଇମାସ ପରେ ମୋର ସ୍ୱାମୀ ମଙ୍ଗଳ ଉରମଣ ଆମଘରେ ଆସି ପହଞ୍ଚିଲେ । ମା ସେତେବେଳେ ଶୋଇଥିଲେ । ମୋ ଆଗରେ କାନ୍ଦିଲା । କହିଲା "ଏ ସବୁ ତୋ ସାଙ୍ଗରେ କଣ ହେଲା ବନ୍ଦନା ! ମୁଁ ବେତସ୍ଥାରୁ ବହୁ ଜିନଷ ତୋପାଇଁ ଆଣିଥିଲି । ଘରେ ପହଞ୍ଚି ସାନ

ଭଉଣୀଠୁଁ ସବୁ କଥା ଶୁଣିଲି । ବର୍ତ୍ତମାନ ମୁଁ କଣ କରିବି ତୁ କହନା ?"

ମୁଁ ତାଙ୍କ ସାଙ୍ଗରେ ଯିବାପାଇଁ ଗୃହୁଁ ଥିଲି କିନ୍ତୁ ଶ୍ୱଶୁର ଘରକୁ ନୁହେଁ । ମୁଁ ତାଙ୍କୁ ମାଙ୍କ ସାଙ୍ଗରେ ସାକ୍ଷାତ କରାଇଲି— ସବୁ କଥା କହିଲି— ମା କହିଲେ ଆଚ୍ଛା ଠିକ୍ ଅଛି । ମା ତାଙ୍କୁ ଡାକି କହିଲେ ତମେ ଯେତେବେଳେ ନିଜ ଗୋଡ଼ରେ ଠିଆ ହେବ ସେତେ ବେଳେ ମୁଁ ବନ୍ଦନାକୁ ତମ ସାଙ୍ଗରେ ପଠାଇବି । କିନ୍ତୁ ତମ ବାପାଙ୍କ ଘରକୁ ପଠାଇବି ନାହିଁ ।

ସେ ଚାଲିଗଲେ । ମୁଁ ପୁଣି ମୋର ପୁରୁଣା ଜୀବନରେ ଅଭ୍ୟସ୍ତ ହୋଇଗଲି । ତଥାପି ସେ ବେଳେ ବେଳେ ମୋ ମନ ମଧ୍ୟକୁ ଆସିଯାଆନ୍ତି । ସେତେବେଳେ ମୋର ଇଚ୍ଛାହୁଏ ସତେ କଣ ମଙ୍ଗଳା ଆସି ମତେ ସାଙ୍ଗରେ ନେବ .... ?

—୦—

## ।। ତୃତୀୟ ଅଧ୍ୟାୟ ।।

ଦୁଇ ବର୍ଷ ପରେ ଦିନେ ହଠାତ୍ ମୋର ସ୍ୱାମୀ ମଙ୍ଗଳ ଟୋକ ପୋଷାକ ପିନ୍ଧି ଆମ ଘରେ ପହଂଚିଲେ । କହିଲେ, "ବନ୍ଧଆ ରୁ ଏବେ ଚାଲ ଏବେ ମତେ ନାରାୟଣପୁର ଜମିଦାରଙ୍କ ମୌଜାରେ ସିପାହୀର ଚାକିରୀ ମିଳିଯାଇଛି । ବିଶ୍ୱାସ ନ ହେଉଛି ତ ମୋ ଖାକି ପୋଷାକକୁ ଦେଖ୍ ! ସେଠାରେ ମଧ୍ୟ ମତେ ରହିବା ପାଇଁ ଘର ମିଳିଯାଇଛି ।

ଯେତେବେଳେ ମା ଏକଥା ଶୁଣିଲେ ମତେ ପଠାଇବାପାଇଁ ରାଜି ହୋଇଗଲେ । ଯେମିତି ଝିଅକୁ ବିଦାୟ ଦିଆଯାଏ ସେମିତି ବିଦାହେଲା-ବେଳେ ମୋ ସାଙ୍ଗରେ ସବୁ ଜିନିଷ ତଥା ବିଛଣା, କଂସାବାସନ ଇତ୍ୟାଦି ଦେଇ ଟାଙ୍ଗାରେ ବସାଇଦେଲେ ଏବଂ ସାଙ୍ଗରେ ଚପରାସୀକୁ ମଧ୍ୟ ପଠାଇଲେ ସିଏ ଯାଇ ଆମ ଘରଦ୍ୱାର ଦେଖି ଆସିବ ।

ମୋର ମନ ମଧ୍ୟ ଖୁସିଥିଲା । ନାରାୟଣପୁର ଗୋଟିଏ କୋଣ ବାଟ । ବେଶି ଦୂର ନୁହେଁ ।

ମୋର ଦୁଇ ଭାଇ ହଷ୍ଟେଲ୍ ଚାଲି ଯାଇଥିଲେ । ମୋତେ ମଧ୍ୟ ମାଙ୍କ ପାଖରେ ଏକୁଟିଆ ରହିବା ପାଇଁ ଖରାପ ଲାଗୁଥିଲା ।

ସେଠି ପନ୍ଦରଦିନ ଭିତରେ ସବୁ ଠିକ୍ ଠାକ୍ କରା ହୋଇଥିଲା । ଷ୍ଟେସନ ଘରଟିଏ, ସାମନାରେ ବାରଣ୍ଡା, ପଛପଟରେ ଅଗଣା, ମୁଁ ସତରେ ଏ ଷ୍ଟେସନିଆ ଘରଟିଏ ପାଇବାରୁ ଖୁବ୍ ଖୁସି ହୋଇଗଲି । ଯେତେବେଳେ ଆମେ ସବୁ ଖାଇପିଇ ଆରାମରେ ବସିଥିଲୁ, ସେତେବେଳେ ମୁଁ ତାଙ୍କୁ ପଚାରିଲି, ଆଉ ଶ୍ୱଶୁରଘରର ଖବର କଣ ? ଚାକିରି କରିବାପାଇଁ ଅନୁମତି କେମିତି ମିଳିଲା ?

ଏକଥା ଶୁଣି ମୋ ସ୍ୱାମୀ କହିଲେ—"ଆମର ଜମି ଦେଇ ରେଳ ଲାଇନ୍ ଟିଏ ଗଲା । ସରକାର ସବୁ ଜମି ନେଇଗଲେ । ତାକୁ ବଦଳ ଯେଉଁ ଟଙ୍କା ସରକାର ଦେଲେ ସେ ଟଙ୍କାକୁ ବାପା ନେଇ ବ୍ୟବସାୟ କରିବା ପାଇଁ ପାଟନା ଚାଲିଗଲେ । ସେଠାରେ ଖରାପ ଲୋକଙ୍କ ସମ୍ପର୍କରେ ଆସି ସବୁ ପଇସା ଖର୍ଚ୍ଚ କରି ଦେଇ ନିଜକୁ ନଷ୍ଟ କରିଦେଲେ । ତାଙ୍କର ଦେହ ମଧ୍ୟ ଖରାପ ହୋଇଗଲା । ଅନ୍ୟ ଭାଇମାନେ ମଧ୍ୟ ରୋଜଗାର କରିବାକୁ ସହରକୁ ଚାଲିଗଲେ । ଘରେ ବିପଦ ଘନେଇ ଆସିଲା । ଏହିସବୁ କାରଣ ଯୋଗୁଁ ମୋତେ ମଧ୍ୟ ଚାକିରି ଖୋଜିବାକୁ ବାହାରକୁ ଯିବାକୁ ପଡ଼ିଲା ।

ମଙ୍ଗଳ ବଡ଼ ଶାନ୍ତ ସ୍ୱଭାବର ଲୋକ ଥିଲେ । ସକାଳୁ ସକାଳୁ ଉଠି ନିତ୍ୟକର୍ମ ସାରି ମୋ ପାଇଁ ଦୁଇ ବାଲ୍ଟି ପାଣି କୁଣ୍ଡରେ ରଖି ଦେଉଥିଲେ । ପରେ ପୁଣି ଷ୍ଟୋଭ ଲଗାଇ ଚାହା ତିଆରି କରି ମତେ ବଡ଼ ସ୍ନେହରେ ଡାକି ନିଦରୁ ଉଠାଇ ଚାହା ଦେଉଥିଲେ । ମୁଁ ସକାଳର ନିତ୍ୟକର୍ମ ସାରି ତାଙ୍କପାଇଁ ଜଳଖିଆ ପ୍ରସ୍ତୁତ କରୁଥିଲି । ସେ କାମକୁ ଯିବା ଆଗରୁ ମୁଁ ଖାଇବା ରେଡ଼ି କରି ଦେଉଥିଲି ।

ସେ ଘରୁ ଗଲାପରେ ମୁଁ ଘରର ଅନ୍ୟାନ୍ୟ କାମ ସାରି ବିଶ୍ରାମ ନେଉଥିଲି । ପାଖି ପଡ଼ୋଶୀମାନେ କେହି ବିଶେଷ ଭଲ ଲୋକ ନଥିଲେ । ସେମାନେ ମଧ୍ୟ ଶିକ୍ଷିତ ନଥିଲେ । ମୁଁ ସେମାନଙ୍କ କହି ମିଶିପାରୁ

ନଥିଲି । ସେମାନେ ସବୁ ଟିପ୍ପଣୀ ମାରୁଥିଲେ ଏବଂ କହୁଥିଲେ—"ଏ ସୁନ୍ଦରୀ ବୋଲି ଖୁବ୍ ଗର୍ବ କରୁଛି ।"

ସେମାନଙ୍କ କଥାରେ ମୋର କଣ ଯାଏ ଆସେ ? କେତେବେଳେ କେମିତି ଜମିଦାରଙ୍କ ଘରୁ ଯେଉଁ ସବୁ ପୁରୁଣା ପତ୍ର ପତ୍ରିକା ଆସୁଥିଲା ତାକୁ ସବୁ କମ୍ ଦାମ୍‌ରେ କିଣି ମୁଁ ପଢୁଥିଲି ।

ଏବେ ଆମ ଜୀବନ ଧୀରେ ଧୀରେ କଟିବାରେ ଲାଗିଲା । ମଙ୍ଗଳ ମୋ ଉପରେ କେବେ ବିରକ୍ତ ହେଉନଥିଲେ । କିନ୍ତୁ ପଡ଼ୋଶୀ ଘରମାନଙ୍କରେ ସବୁବେଳେ କଳି ଝଗଡ଼ା ଲାଗି ରହୁଥିଲା । ସେମାନଙ୍କ ମଧ୍ୟରେ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ବାଡ଼ିଆ ପିଟା ମଧ୍ୟ ହେଉଥିଲା । ସ୍ୱାମୀ ମଦପିଇ ମାତାଲ ହୋଇ ନିଜ ସ୍ତ୍ରୀକୁ ବାଡ଼ୋଉଥିଲା ।

କିଛି ମାସ ବିତିଥିଲା । ଜୀବନଟା ଧୀରେ ଧୀରେ ଛନ୍ଦମୟ ହେବାପାଇଁ ଆରମ୍ଭ କଲା । ମନରେ ଉଦ୍ଦୀପନା ଦେଖାଦେଲା ।

ଦିନେ ଦ୍ୱିପ୍ରହରରେ ମୁଁ ବାରଣ୍ଡାରେ ବସି ନଖ ପାଲିସ୍ ଏବଂ ଅଳତା ଲଗାଉଥିଲି । ଏହି ସମୟରେ ଜଣେ ବେଶ୍ଭୂଷାବାନ ଭଦ୍ରଲୋକ ସହରରୁ ଆସି ପହଞ୍ଚିଲେ ଏବଂ ପଚାରିଲେ— ଏଠି ମଙ୍ଗଳ ବୈଧୂରିଙ୍କ ଘର କେଉଁଠି ?

ମୁଁ କହିଲି—ହଁ ଏଇ ଘର ।

ଏ କଥା ଶୁଣି ଶୁଣି ସେ ଡ଼େଇଁପଡ଼ି ମୋ ପାଦକୁ ଛୁଇଁ ପ୍ରଣାମ କଲେ ଏବଂ କହିଲେ ତମେ ମୋତେ ଚିହ୍ନି ପାରିବନି ଭାଉଜ ମୁଁ ତମ ଦିଅର । ପାଟନାରେ ସମ୍ବାଦ ଅଫିସରେ କାମ କରେ । ପୂଜାରେ ଛୁଟି

ହୋଇଥିଲା - ମୁଁ ଆସିଥିଲି । ଖବର ଦେବାକୁ ହବୁ ଦେଇଥିବ । ପ୍ରକୃତରେ ଆମର ଘରେ ଭଲ ବୋଲି ତମଭଳି ସୁନ୍ଦରୀ ଘରଣି ପାଇଛୁ । ଯଦି ତମେ କହିବ, ମୁଁ ଏଠି ରହିବି ।

ମୁଁ ତରତର କରି ବନ୍ଧୁକୁ ଡାକି ଆଣିଦେଲି । କହିଲି, "ହଉତ ମୁଁ ଭୁଲି ଯାଇଥିଲି ।"

ମୁଁ ତାଙ୍କ ହାତରୁ ବ୍ୟାଗ ନେଲି । ଗୁଡ଼ପାଣି ମିଶାଇ ପିଇବାକୁ ଦେଲି । ପୁଣି ବସି ତାଙ୍କ ପାଖରେ ବସିଲି । ତାଙ୍କ କଥାରେ କଥା ମିଶାଇ ଗପୁଁ ଗପୁଁ ସମୟ ଜଣାପଡ଼ିଲା ନାହିଁ । ସନ୍ଧ୍ୟା ହୋଇଗଲା । ସେ ମଧ୍ୟ ଡ୍ୟୁଟିରୁ ଫେରି ଆସିଲେ । ଆସୁଁ ଆସୁଁ କହିଲେ, "ଆରେ ଭାଇ ସୁରେଶ, ତମେ କିପରି ଭୁଲିଗଲ ? ଆମେ ଗଲାବର୍ଷ ଏତେ ଦିନ ତମର ମନେ ପକାଇଲୁଁ ।"

ସୁରେଶ ହାଙ୍ଗେ ହାଙ୍ଗେ କହିପକାଇଲା "ଭାଇ ତମକୁ ପ୍ରଣାମ । କିନ୍ତୁ ତମେ କୁହ, ଏମିତିଆ ପଣ୍ଡିତିଏ ତମେ କେଉଁଠି ଲୁଚାଇ ରଖିଥିଲ ?" ଆମକୁ ଟିକିଏ ତମ ବାହାଘରରେ ମଧ୍ୟ ମନେ ପକାଇଲ ନାହିଁ ।

କଥାବାର୍ତ୍ତା ମଧ୍ୟରେ ଦୁଇଭାଇ ବାହାରେ ଝଟିଆ ପକେଇ ଗପସପ କରିବାରେ ଲାଗିଗଲେ ।

ମୁଁ ଏକ ନୂଆ ଉତ୍ସାହରେ କାମରେ ମନ ଦେଇ ସେମାନଙ୍କ ପାଇଁ ଖାଇବା ତିଆରି କରିବାରେ ଲାଗିଗଲି । ଯେତେହେଲେ ସେ ସହରରୁ ଆସିଛନ୍ତି, ଏଣୁ ତାଙ୍କର କୌଣସି ଅସୁବିଧା ହେବା ଉଚିତ ନୁହେଁ ।

ଖାଇବାପରେ ଯେତେବେଳେ ସେ ବ୍ୟାଗରୁ ଗୋଟିଏ ରେଡ଼ିଓ (ଟ୍ରାନ୍‌ଜିଷ୍ଟର) ବାହାରି କଲେ ସେତେବେଳେ ମୋ ଆଖି ଚମକି ଉଠିଲା । ସତେ ଯେମିତି ମୋର ହଜିଥିବା ସାଥିଟିଏ ମତେ ମିଳିଗଲା ।

ମୁଁ ତାକୁ କାନପାଖରେ ଲଗାଇ ସିନେମା ଗୀତ ଶୁଣିବାରେ ଲାଗିଲି । ସକାଳୁ ସେ କାମରେ ଚାଲିଗଲେ । ଆମେ ସନସାଇଁ ଭାଉଜ ସହିତ ତପରେ ସମସ୍ତ କଟାଉଁ ଏବଂ ପାଖ ବଗିଚାରେ ଅମୃତ ଲିଚୁ ଇତ୍ୟାଦି ତୋଳି ଖାଉଁ ; ସାମରେଖା ନଦୀକୂଳେ ବସି ଗୀତଗାଉଁ, ଆଉ ସିନେମା କଥା ହେଉଁ ।

ସୁରେଶ କହନ୍ତି, "ଭାଉଜ, ତୁମେ ସିନେମାରେ ହିରୋଇନ୍ ହୋଇପାରନ୍ତ । ତମ ଅଙ୍ଗରେ ତ ରେଖା ହେମମାଳିନୀଙ୍କ ରୂପ ଲୁଚିଛି ନା ହେଁ ।"

ମୁଁ ଏସବୁ କଥା ଶୁଣି ଗର୍ବରେ ଫୁଲି ଉଠୁଥିଲି । ଦିନଟା କେମିତି କଟି ଯାଉଥିଲା । ସମୟ ଜଣା ପଡୁ ନଥିଲା । ସିଏ ଆସିଥିଲେ ଦୁଇ ଦିନ-ପାଇଁ, ରହିଗଲେ ଦଶଦିନ । ଯେତେବେଳେ ସେ ଘରକୁ ଫେରିବା କଥା କହିଲେ, ସେତେବେଳେ ମୋ ମନଟା ଦୁଃଖ ହୋଇଗଲା । ମୁଁ ତାଙ୍କ ପାଖରେ ବିନତି କଲି, "ଆଉ ଦୁଇଦିନ ରହି ଯାଆନ୍ତୁ" ! ସେ ମଧ୍ୟ କହିଲେ "ତମର ଭାଉଜ ଯଦି ଏତେ କରି କହୁଛନ୍ତି ତେବେ ରହି ଯାଉଛି ! ତମର ଆସିବା ପର ଠାରୁ ସେ ଟିକିଏ ଖୁସିରେ ଅଛି । ନହେଲେ ଏକୁଟିଆ ସମୟ କଟାଇ କଟାଇ ସେ ବିରକ୍ତ ହୋଇ ଯାଆନ୍ତି ।"

ଦୁଇଦିନ ପରେ ସୁରେଶ ଘରୁ ବିଦା ହୋଇଗଲେ ଏବଂ ଗଲା-ବେଳେ ମତେ ରେଡ଼ିଓଟା ଦେଇଗଲେ ଏବଂ ଗଲାବେଳେ କହିଗଲେ ଯେ ଆଉଥରେ ଜଲ୍‌ଦି ଆସିବେ ।

କିଛିଦିନ ଧରି ମୋର କାମରେ ମନ ଲାଗିଲା ନାହିଁ । ସ୍ରେଫ ରେଡ଼ିଓଟା ଧରି ମୁଁ ତାଙ୍କରି କଥା ଭାବିବାରେ ଲାଗିଲି ।

ଶୀତ ଦିନ ଆସୁଥିଲା । ଥଣ୍ଡା ପବନ ବୋହୁଥିଲା । ସନସାଇଁ ସୁତେଲୀ କାରଣରେ ମୁଁ ବାହାରେ ବସି ରହୁଥିଲି ଏବଂ ରାତରେ ନିଆଁ

କଳାଇ ଘର ଭିତରେ ଶୋଇ ଯାଉଥିଲି । ତଥାପି ଭଲ ନିଦ ହେଉ ନଥିଲା । ଝରକାରେ ବସି ଝଡ଼ ଖାଇବାକୁ ଭଲ ଲାଗୁଥିଲା ।

ଆଜିକାଲି ମଙ୍ଗଳ ମଧ୍ୟ ଦିନବେଳେ ଘରେ ରହୁଥିଲେ । ଦିନରେ ସେ ବଗିଚା ସଫା କରି ଗଛ ଲଗାଉଥିଲେ ।

ମୁଁ କହୁଥିଲି ଫୁଲ ଗଛ ଲଗାଇବା । ସେ କହୁଥିଲେ ପନିପରିବା ଲଗାଇବେ । କାରଣ ପନିପରିବା ହେଲେ ବିକି ହୋଇ କିଛି ପଇସା ମିଳିବ ।

ଏଣୁ ନିଷ୍ପତ୍ତି ହେଲା ଯେ ଆଗପଟେ ଫୁଲଗଛ ଲଗାହେବ ଏବଂ ପଛପଟେ ପନିପରିବା ଲଗାହେବ ।

ଏହି ସମୟରେ ମୁଁ ବାହାରକୁ ଅନାଇଁ ଦେଖେତ ସୁରେଶ ଛୁଟା ହୋଇଛନ୍ତି । ତାଙ୍କୁ ଦେଖି ମୁଁ ଆନନ୍ଦରେ ଖୁସିରେ ଉଲ୍ଲସି ଉଠିଲି । ସେ କହିଲେ, "ଅରେ ସୁରେଶ, ଆ ଆ - ଏଟର ବୋଧେ ତୋତେ କଲେଜ ଛୁଟି ମିଳିଗଲା ।" ସେ କହିଲେ, "ହଁଇ ! ମୁଁ ଏଇ ପାଖ ଗାଁଆରେ ଏକ ଡକାୟତି ଘଟଣାର ଖବର ନେବା ପାଇଁ ଆସିଥିଲି । ଭାବିଲି ତମକୁ ସବୁ ଦେଖିଆସେଁ ।"

ମଙ୍ଗଳ କହିଲେ ଭଲକଲୁ ଆସିଗଲୁ । ମୋର ଏବେ ନାଇଟ୍ ଡ୍ୟୁଟି ଚାଲିଛି । ଦିନରେ ତମେ ଦୁଇଜଣ ଗପସପ କରିବ । ଆଉ ରାତିରେ ବି ଏଠି ରହିଯିବୁ । ନହେଲେ ତୋ ଭାଉଜଙ୍କୁ ଡର ଲାଗିବ ।

ସେଦିନ ରାତିରେ ସେ ଡ୍ୟୁଟିରେ ଗଲାପରେ ସୁରେଶ ମତେ ତାଙ୍କ ନିଜ ଲାଇବ୍ରେରୀରୁ ଅନେକ କାଗଜ ଆଣି ଦେଇଲେ, ମୁଁ ଦେଖି ଖୁସି ହୋଇଗଲି ।

ପାଉଡର, ଲିପ୍‌ଷ୍ଟିକ, ଚୁଡ଼ି, ଶାଢ଼ୀ ଇତ୍ୟାଦି କେତେ କ'ଣ । ତା ହାତରେ ବ୍ଲାଉଜ୍ ଏବଂ ବଡ୍ରସ୍ ମଧ୍ୟ ।

ମୁଁ ଖୁସିରେ ପାଗଳ ହୋଇଗଲି ।

ସେ କହିଲେ, ଭାଉଜ, ତମକୁ ଯଦି ସତରେ ପସନ୍ଦ ଚାହିଁଲେ ପିନ୍ଧିକି ଦେଖାଅନା । ଆଜି, ବର୍ତ୍ତମାନ ପିନ୍ଧ । ମୁଁ ତାଙ୍କ କହିବା ମୁତାବକ ସବୁ ଜିନିଷ ପିନ୍ଧିଲି । ସେ ବାହାର ବାରଣ୍ଡାରେ ବସି ସବୁ ଦେଖୁଥିଲେ । ଯେତେବେଳେ ସେ ମତେ ପାଖକୁ ଡାକିଲେ ସତରେ ଲାଜରେ ମୋ ଆଖି ବୁଜି ହୋଇଗଲା ।

ସେ ଘର ଭିତରକୁ ଆସି ଧୀରେ କବାଟ ବନ୍ଦ କଲେ ଏବଂ ମତେ ଖଟ ଉପରକୁ ଆଉଜାଇ ନେଲେ ।

ତାପରେ ମୋର ଆଉ କିଛି ହୋସ୍ ନାହିଁ - ଦୁଇଟି ଶରୀର ଏକ ହୋଇଗଲେ ।

ଆମ ଭିତରେ ଦୂରତା କମିଗଲା । ମୁଁ ଆଉ ଏକ ନୂଆ ଦୁନିଆଁରେ ପହଂଚ ଗଲି ।

ଆଠଦିନ କେମିତି ବିତିଗଲା ଜଣା ପଡ଼ିଲା ନାହିଁ । ସବୁବେଳେ ମନଟା ମୋର ଅଜଣା ପୁଲକରେ ଭରି ରହୁଥିଲା । ଦେହଟା ଫୁର୍ତ୍ତିରେ ହାଲୁକା ଲାଗୁଥିଲା ।

ଗଲାବେଳେ ସୁରେଶ ମୋତେ ପୁଣି ଜଲ୍‌ଦି ଆସିବାକୁ ପ୍ରତିଜ୍ଞା କରି ଏବଂ ଏଥର ମତେ ସେ ସହର ଦେଖାଇବାର ପ୍ରତିଶ୍ରୁତି ଦେଇ ବିଦା ହୋଇ ଗଲେ ।

ଏବେ ହଠାତ୍ ହପ୍ତାଏରେ ମୋ ଦେହ ଭାରି ଭାରି ଲାଗୁଥିଲା । ହାତ ଗୋଡ଼ ଫୁଲି ଉଠୁଥିଲା । ଖାଇବା ପିଇବାରେ ମନ ଲାଗୁ ନଥିଲା । ବାନ୍ତି ମଧ୍ୟ ବେଳେ ବେଳେ ଲାଗୁଥିଲା । ସେ ମଧ୍ୟ ବଡ ବ୍ୟସ୍ତ ହେଲେ, ମୋର ଦେହର ଅବସ୍ଥା ଦେଖି ।

ପରଦିନ ସେ ଗାଁର ଏକ ପୁରୁଣାକାଳିଆ ବୁଢ଼ୀ ସ୍ତ୍ରୀଲୋକକୁ ଡାକି ଆଣିଲେ ଏବଂ ତାକୁ ମୋ ଦେହ ବିଷୟରେ ପଚାରିଲେ । ତାପରେ ସେ ବୁଢ଼ୀଟି ମତେ ସବୁ ପଚାରିଲା ! କହିଲା, ନୋହୁ ! ତୋର କେତେ ଦିନ ହେଲା ଋତୁ ହୋଇନାହିଁ ! 'ମୁଁ କହିଲି ଦୁଇମାସ ହେବ । ଭାଇ ମିଠାଇ ଖୁଆଅ । ତମଘରକୁ ନୂଆ ପିଲାଟିଏ ଆସିବ । ବୋହୂକୁ ଏଥର ଖଟା ମିଠା ଯାହା ଚାହିଁବ ଖାଇବାକୁ ଦେବ । ଆରମରେ ରହିବାକୁ ଦିଅ । କିଛି ଚିନ୍ତା ନାହିଁ ।"

ଆମେ ଦୁହେଁ ଏ ଖବର ପାଇ ଖୁବ୍ ଖୁସି ହେଲୁଁ । ଯେତେବେଳେ ଗପିଲୁ ଏହି କଥାହିଁ ଗପିଲୁଁ । କଣ ହେବ ପୁଅ ନା ଝିଅ । ସେ କହନ୍ତି ମୋତେ ତୋପରି ସୁନ୍ଦର ଝିଅଟିଏ ଦରକାର, ପୁଅହେଲେ ସେ ପୁଣି ମୋର ଭଳି ଦରଓ୍ୱାନ ଗୁର୍କାଣ୍ଟି କରିବ ।

ଆମ୍ବ ଗଛ ବଉଳିଲା ଏବଂ କଞ୍ଚାଆମ୍ବ ମଧ୍ୟ ଲେନ୍ଥି ଲେନ୍ଥି ଧରିଲା ।

ମୁଁ ଦିନସାରା ଲୁଣ ମରିଚ ଲଗାଇ ଆମ୍ବ ଖାଇବାକୁ ଲାଗିଲି । ସେ ମଧ୍ୟ ମୋର ଖୁବ ଯତ୍ନ ନେଲେ । ଘରର ଅଧା କାମ ନିଜେ ସମ୍ଭାଳି ନେଲେ ।

—୦—

## ॥ ଚତୁର୍ଥ ଅଧ୍ୟାୟ ॥

ଚୈତ୍ରମାସ ଆସିଗଲା । ଆମ୍ବ ବଗିଚାରେ କୋଇଲିର କୁ କୁ ସ୍ୱର ଶୁଣାଗଲା । ଦିନରେ ଗରମ ହେଲା । ତଥାପି ରାତିରେ ଥଣ୍ଡା ଟିକେ ପଡ଼ୁଥିଲା । ଗାଁରେ ସବୁ ଚାଷୀ ବିଲରୁ ଗହମ, ଚଣା, ସୋରିଷ ଅମଳକରି ଘରକୁ ନେଇ ଆସିଥିଲେ । ସବୁ ଚାଷୀମାନେ ଖୁସିଥିଲେ । କିନ୍ତୁ ତଥାପି ସେମାନେ ଜମିଦାର ଘରକୁ ଦଉଡ଼ୁଥିଲେ ସୁଧ ଦେବାପାଇଁ । ଏଣୁ ସେମାନେ ଚିନ୍ତିତ ଥିଲେ କେତେ ଶସ୍ୟ ବଳକା ରହିବ । ପିଲାମାନଙ୍କପାଇଁ ଏହା ଏକ ଚିନ୍ତାର ବିଷୟ ଥିଲା । ମୋର ଏବେ ଅଠରମାସ ହୋଇଗଲା । ଦେହଟା ଖରି ଖରି ଲାଗିଲା । ଦିନେ ସକାଳୁ ସକାଳୁ ସ୍ୱେ କାମକୁ ବାହାରିଗଲେ ।

ମୁଁ ଅଗଣାରେ ବସି ବାଳ ଶୁଖାଉଥିଲି । ବାହାରେ କିଛି ଘୋଡ଼ାର ଟାପୁ ଶବ୍ଦ ଶୁଣି ମୁଣ୍ଡ ଉଠାଇ ଦେଖିଲି ମୋ ସାମନାରେ ଏକ ସୁନ୍ଦର ସୌଦାଗର ଘୋଡ଼ାରେ ଆସି ମୋ ସାମନାରେ ଠିଆ ହୋଇଗଲା ।

ଆଖି ପଡ଼ିଗଲା ମାତ୍ରେ ଡରିଯାଇ ମୁଁ ଘରଭିତରକୁ ଦୌଡ଼ିଗଲି । ରାଜକୁମାର ମୋ ଆଖିଆଗରୁ ଦୂରେଇଗଲା ।

ସନ୍ଧ୍ୟାବେଳେ ଯେତେବେଳେ ସ୍ୱେ ଆସିଲେ, ମୁଁ ତାଙ୍କୁ ସବୁ କହିଲି । ସେ କହିଲେ, ମାଲିକର ବଡ଼ପୁଅ ହରି ପ୍ରତାପ ସିଂ କଲିକତାରୁ ଆସିଛନ୍ତି । ଶୁଣୁଛି ସେ କଣ ଭୋଟ ଲଢ଼ିବେ ? କେବଳ ଲୋକ ଲଢ଼ିବେ,

କିନ୍ତୁ ନାଁ! ହେବ ଆମ ମାଲିକଙ୍କର । ତାଙ୍କ ସାମନାରେ ମୁଣ୍ଡ ଉଠାଇବାକୁ ସାହାସ କରିବ କିଏ ?

ମାଲିକଙ୍କ ବିରୋଧରେ ଭୋଟ ଦେବା ମଧ୍ୟ ପାପ । ଆମେ ସବୁ ଆଜିଠୁଁ କହିରଖୁଛୁଁ ଭୋଟରେ ଜିତିକରି ଦିଲ୍ଲୀଯାଇ ସେ ଆମ କଥା କେନ୍ଦ୍ର-ସରକାରଙ୍କ ଆଗରେ ଉପସ୍ଥାପିତ କରି ଆମର ଉନ୍ନତି କରିବେ । ଦେଶରେ ରାମରାଜ୍ୟ ଆସିଯିବ, ବୁଝିଲୁ, ! ରାମରାଜ୍ୟ !

ଆମେ ଦୁହେଁ ବହୁ ସମୟ ପର୍ଯ୍ୟନ୍ତ କଥାହେଲୁଁ । ଆଖି ଲାଗି-ଆସୁଥିଲା । ଏହି ସମୟରେ ବାହାରେ ଝଟ୍ ଖଟ୍ ଆବାଜ୍ ଶୁଣାଗଲା । ସେ କବାଟ ଖୋଲିଲେ । ମାଲିକଙ୍କ ଚାକର ଡାକୁଥିଲା । ସେ କହିଲେ, ବୋଧହୁଏ ମାଲିକଙ୍କ କିଛି କାମ କରୁଥିବ ପଡ଼ିଥିଲା । ଏଥିପାଇଁ ସେ ଡାକୁଛନ୍ତି ।

କିନ୍ତୁ ସେ ଲୋକଟି କହିଲା, ମଙ୍ଗଳ ! ଧରିନେ ଏଥର ତୋର ଭାଗ୍ୟ ଖୋଲିଗଲା । ଶ୍ରେଷ୍ଠ ସରକାର ତୋ ସ୍ତ୍ରୀକୁ ପସନ୍ଦ କରିଛନ୍ତି । ଦାମ୍ ତ ନିଶ୍ଚୟ ଖୁବ୍ ଦେବେ । ତୁ ଏ ଝୁମ୍ପୁଡ଼ିରେ ଏତେ ସୁନ୍ଦର ଜିନିଷ କେବେଠୁ ଲୁଚାଇ ରଖିଛୁ ?

ମୁଁ ତ ସତରେ ଡରିଗଲି—କାନ୍ଦିବାକୁ ଲାଗିଲି । ସେ ମଧ୍ୟ ଡରିଗଲେ । ମୁଁ ତାଙ୍କ ଗୋଡ଼ ଧରିଲି, ମାଲିକଙ୍କ ଚାକର ଗୋଡ ମଧ୍ୟ ଧରିଲି । ତାକୁ କହିଲି, "ଭାଇ, ମୋତେ ବଞ୍ଚାଅ ଭାଇ" ! ଚାକରଟି ବାହାରକୁ ଇସାରା କଲା । ବାହାରେ ଚାରିଜଣ ଲାଠିଧାରୀ ଗୁଣ୍ଡା ମହଜୁଦ ଥିଲେ—ସେମାନେ କହିଲେ "ବେଶି ପାଟି କରନାହିଁ । ଚୁପ୍ ଚାପ୍ ଚାଲିଆ ନହେଲେ ଜାଣିରଖ୍...... ।"

ମୁଁ କୌଣସି ସାହାରା ନ ପାଇ ତାଙ୍କ ଆଡ଼କୁ ଅନାଇଲି । ସେ ଉତ୍ତରରେ କିଛି କହିଲେ ନାହିଁ । କେବଳ କହିଲେ ! "ତୁ ଡର୍ ନାହିଁ ।

ମୁଁ ତୋ ହାତରେ ଅଛୁ । ମାଲିକଙ୍କ ଗୋଡ଼ ହାତ ଧରି ପୁଣି ତତେ ନେଇଆସିବି ।"

ଗୁ ବାପ୍ପ କାନ୍ଦିନ ହେଉଛୁ—ତତେ ସେ ବଢ଼ିଆ ବଢ଼ିଆ ଜିନିଷ ଦେବେ । ବହୁତ ଭଲ ପାଇବେ । ସେମାନେ ସବୁ ଭଲ ଲୋକ । ଦେଖିଲୁ, ତତେ ନେବାପାଇଁ ତାଙ୍କର କେତେ ସରଧା । ପୁଣି ସେ ଆମର ଅନ୍ନଦାତା । ପୁରା ଅଧିକାର ଅଛି ତାଙ୍କର ଆମ ଉପରେ । ଉପାୟ ନ ଦେଖି ମୁଁ କାନ୍ଦି କାନ୍ଦି ଶାଢ଼ୀ ବଦଲାଇଲି, ବାଳ ବାନ୍ଧିଲି, ଆଉ ବାହାରେ ଅପେକ୍ଷା କରିଥିବା ପାଲିଙ୍କିରେ ବସିଲି । ମଙ୍ଗଳ ମୋ ହାତରେ କଥାକାନ୍ତି ହୋଇ ଗୁଲିଥିଲେ ।

ମାଲିକଙ୍କ କୋଠିରେ ପାଲିଙ୍କି ପଶିଲାପରେ ମୁଁ ତାଙ୍କ କଥା ଆଉ ଶୁଣି ପାରିଲିନାହିଁ । ପାଲିଙ୍କି ବହିଲା ମୁଁ ପୁଣି କାନ୍ଦିବାକୁ ଆରମ୍ଭ କଲି । ଦୁଇଜଣ ଦାସୀ ଆସି ମତେ ଉପର ଘରକୁ ନେଇଗଲେ । ଘରର ସାଜସଜ୍ଜା ଦେଖି ମୋ ଆଖି ଚମକି ଉଠିଲା । ମତେ ଲାଗିଲା ସତେ ଯେମିତି କୌଣସି ସିନେମାରେ ଏମିତିଆ ଘରଟାଏ ଦେଖିଛି । ବୋଧହୁଏ ଏହାକୁ ହିଁ ସ୍ୱର୍ଗ ବୋଲି କୁହନ୍ତି ।

ଘରସାରା ବଡ଼ ବଡ଼ ଦର୍ପଣ ଲାଗିଥିଲା । ବିଭିନ୍ନ ପ୍ରକାରର ଝାଡ଼ ଆଲୁଅରେ ସାରା ଘରଟି ଝଲମଲ ହେଉଥିଲା । ଉଲଗ୍ନ ନାରୀ ମୂର୍ତ୍ତିଙ୍କର ତୈଳଚିତ୍ର ସବୁ କାନ୍ଥରେ ଶୋଭା ପାଉଥିଲା, ଘର ଭିତରେ ପଡ଼ିଥିବା ଗଦିରେ ଶଙ୍ଖମଲମଲ ଧଳା ବିଛଣା ଚଦର ପଡ଼ିଥିଲା ।

ମୁଁ ନିଜକୁ ଭୁଲିଯାଇ ଘରର ଚାରିଆଡ଼କୁ ଅନାଇବାରେ ଲାଗିଲି । ଏହି ସମୟରେ ଆଉଜଣେ ସ୍ତ୍ରୀଲୋକ ମୋତେ ଗୋଟିଏ କବାଟ ଆଡ଼କୁ ଯିବାପାଇଁ କହିଲା—ମୁଁ ତା ଇସାରାରେ ଭିତରକୁ ଗଲି ।

ସେହା ଏକ ଗାଧୁଆଘର ଥିଲା ଏବଂ କାନ୍ଥସାରା ଧଳା ଶଙ୍ଖମଲ୍‌ମଲ୍ ଟାଇଲ୍ ଲଗା ହୋଇଥିଲା— ଗାଧୁଆଘରେ ଗାଧୁଆ ଟବ୍ ଥିଲା । ମୁଁ ସେଥିରେ ବିଲାତି ସାବୁନ୍‌ର ମହକ ବାସନା ଫେଣରେ ଗାଧୋଇଲି । ପୁଣି ଗାଧୋଇ ସାରିବାପରେ ମୋତେ ଖୁବ୍ ଦାମୀ ଶାଢ଼ୀ ପିନ୍ଧିବାକୁ ଦିଆଗଲା । ଅଳଙ୍କାର ମଧ୍ୟ ପିନ୍ଧାଇ ଦିଆଗଲା ।

ଏସବୁ ପିନ୍ଧିଲା ପରେ ମତେ ନଖରେ ନଖପାଲିସ୍ ଏବଂ ଆଖିତଳେ ଶୃଙ୍ଗାର ଲଗାଇ ଦିଆଗଲା । ମୋତେ ଯେମିତି ଲାଗିଲା ମୁଁ ସ୍ୱପ୍ନ ରାଜ୍ୟରେ ବିଚରଣ କରୁଛି । ଦର୍ପଣରେ ନିଜକୁ ଦେଖି ମୁଁ ପ୍ରଥମେ ଚିହ୍ନି ପାରିଲି ନାହିଁ । ଯେପରି ସ୍ୱର୍ଗଲୋକରୁ କୌଣସି ପକ୍ଷୀ ମର୍ତ୍ତ୍ୟକୁ ଓହ୍ଲାଇ ଆସିଛି ।

ଘର ଭିତରେ ବିଭିନ୍ନ ଫୁଲସବୁ ସଜାଇ ଦିଆ ଯାଇଥିଲା । କାହାର ଘରୁ ସଂଗୀତର ମୃଦୁ ସ୍ୱର ଏ ଘର ମଧ୍ୟକୁ ପ୍ରବେଶ କରୁଥିଲା । ଘର ଭିତରେ ରୂପା ଥାଳିରେ ଫଳ କିଛି ଥୁଆ ହୋଇଥିଲା ।

ମତେ ଲାଗିଲା ମୁଁ ଯେପରି କାହାଣୀରେ ପଢ଼ିଥିବା ରାଜକୁମାରୀ ପାଲଟି ଯାଇଛି ।

ଏଥର ସାମନା ପଟ ଦୁଆର ଖୋଲିଲା । ମୋ ହୃଦୟ ଥରି ଉଠିଲା ମୁଁ ଆଖି ତଳକୁ କଲି । କାହାର ପଦଧ୍ୱନି ମୋ ପାଖରେ ଶୁଣାଗଲା । କାହାର ମୃଦୁ ଅଙ୍ଗୁଳିର ସ୍ପର୍ଶ ମୋ ମୁହଁକୁ ଧିରେ ଉପରକୁ ଉଠାଇଲା । ଆଖିରେ ଆଖି ମିଳିଗଲା । ମୋର ଯେତେବେଳେ ହୋସ ଆସେ ସେ ହସି କହିଲେ—"ଆରେ ଏ ଅପାର ରୂପ ସମ୍ଭାରକୁ ଭଗବାନ ସେ ଝୁମ୍ପୁଡ଼ିରେ ନଷ୍ଟ କରି ଦେବାକୁ ଚାହାନ୍ତି ନାହିଁ । ଏହାର ଉପଯୁକ୍ତ ସ୍ଥାନ ହେଲା ଏ ରାଜମହଲ ।"

ମୁଁ ଆଖି ଉଠାଇ ଦେଖେତ ଏକ ସୁନ୍ଦର ଦାମୀ ପୋଷାକ ପରିହିତ ରାଜକୁମାର । ଅନ୍ୟକୁ ଆକର୍ଷିତ କଲା ଭଳିଆ ଚେହେରା, ଯୁବା

ବୟସ୍ଦ ଏପର୍ଯ୍ୟନ୍ତ ପାର ହୋଇନାହିଁ । ପାଖାପାଖି ଗୃଳଶ ହୋଇପାରେ । ମୋ ଧାମନାରେ ଉଭା ହୋଇଛନ୍ତି । କିନ୍ତୁ ଅନ୍ୟ ଯେ କୌଣସି ଲୋକ ତାଙ୍କୁ ଦେଖିଲେ ପଚଶ ବର୍ଷରୁ ଅଧିକ ହୋଇଛୁ ବୋଲ୍ କେହି କହି ପାରିବେ ନାହିଁ ।

ସେ ଏକ ଅଙ୍ଗୁର ପେୟ [ଯାହାକି ମୁଁ କେବଳ ସ୍ୱପ୍ନରେ ଦେଖିଛୁ] ମୋ ଆଗରେ ଟୋଳ ଧରିଲେ । ମୁଣ୍ଡ ନୁଆଁଇ ମୁଁ ତାକୁ ସ୍ୱୀକାର କଲି । ପୁଣି ସେ ରୂପା ଗ୍ଲାସ୍‌ରେ ମତେ କିଛି ପିଇବାକୁ ଦେଲେ । ମୁଁ ତାକୁ ସରବତ ବୋଲ୍ ଭାବି ଢ଼ୋକେ ପିଇଦେଲି । କିନ୍ତୁ ତଣ୍ଟିରୁ ଆରମ୍ଭ କରି ପେଟ ପର୍ଯ୍ୟନ୍ତ ଜଳିବାରେ ଲାଗିଲା । ମୁଁ ଡ଼ରିଗଲି, ଗ୍ଲାସଟାକୁ ସଙ୍ଗେ ସଙ୍ଗେ ଥୋଇଦେଲି । ସେ ହସିଦେଲେ, କହିଲେ "ଏହା ସୋମରସ, ଧୀରେ ଧୀରେ ପିଅ ! ଦେଖିବ ତମେ ସ୍ୱର୍ଗୀୟ ଆନନ୍ଦ ଲାଭ୍ କରିବ ।"

ରୂପା ଥାଳିଆରେ ଆମ ଦୁହିଁଙ୍କର ଖାଇବା ଆସିଲା । ଆଜି ପର୍ଯ୍ୟନ୍ତ ମୁଁ କେବଳ ରାଜଭୋଗର ନାଁ ଶୁଣିଥିଲି କିନ୍ତୁ ଆଜି ଆଖିରେ ଦେଖିଲି । କିନ୍ତୁ ଡର ଆଉ ଉତ୍ତେଜନା ବଶତଃ ମୁଁ କିଛି ଖାଇ ପାରିଲି ନାହିଁ । ତାପରେ ଧୀରେ ଧୀରେ ନିଶା ଆସିଗଲା । ସେ ମତେ ଯେମିତି କରିବାକୁ କହିଲେ ମୁଁ ସେମିତି କରିଗଲି । କିଛି ହୋସ ରହିଲା ନାହିଁ । କେତେ ଜଲଦି ରାତି ପାହି-ଗଲା ମୁଁ ଜାଣି ପାରିଲି ନାହିଁ । ଭୋରୁ ଭୋରୁ ମତେ ଯେମିତି ଅଣା ଯାଇଥିଲା, ସେମିତି ଘରକୁ ପଠାଇ ଦିଆଗଲା ।

ମୋ ସ୍ୱାମୀ ବାହାର ବାରଣ୍ଡାରେ ଚିନ୍ତାରେ ଧାଉ ହୋଇ ସେମିତି ବସି ରହିଥିଲେ । ମୁଁ ସେହି ରାତିର ସୁଖ ସ୍ୱପ୍ନକୁ ଆଉ କିଛି ସମୟ ନିଜ ଭିତରେ ରଖିବାକୁ ଗୃହିଁଲି ଓ ତାଙ୍କୁ କିଛି ନକହି ଘର ଭିତରକୁ ଗ୍ଲଲିଗଲି ।

ହୃଦୟ୍ଟ ଭାଙ୍ଗି ପଡ଼ୁଥିଲା, ଜୀବନରେ ଧନକ ପାଇଁ ହେଲେ ମଧ୍ୟ ସୁଖ ମିଳିଥିଲା ସେ ମଧ୍ୟ ଗଲା । ଆଜି ମଧ୍ୟ ଘର ଖଟ ଉପରେ ପଡ଼ିରହି

ଗତ ରାତିର ସୁନ୍ଦର ସ୍ୱପ୍ନ କଥା ଭାବିଭାବି ଶୋଇପଡ଼ିଲି ।

ସନ୍ଧ୍ୟାବେଳେ ନିଦ ଭାଙ୍ଗିଲା ବେଳେ ମୋ ସ୍ୱାମୀ ମୋପାଇଁ କେତେ ରକମ ରୋଷେଇ କରିଛନ୍ତି । କିନ୍ତୁ ଗତ ରାତିର ଖାଇବା ତୁଳନାରେ ଏ ସବୁ ତୁଚ୍ଛ ଥିଲା । ମୋ ଦେହରୁ ଏକ ଅଜବ ବାସ୍ନା ବାହାରୁଥିଲା । ମୁଁ ସେହି ସୁଖ ସ୍ୱପ୍ନକୁ ହଠାତ୍ ଅନ୍ୟ ଏକ ଶରୀରର ସ୍ପର୍ଶରେ ଜଳାଞ୍ଜଳି ଦେଖିବାକୁ ଇଚ୍ଛୁ ନ ଥିଲି ।

ପରଦିନ ସକାଳେ ମୋ ଘରର ସୁରେଶଙ୍କର ଡାକରେ ମୋ ନିଦ ଭାଙ୍ଗିଗଲା । ମୁଁ ଉଠି ଦେଖେଁତ ସେ ମୋ ରୁମ୍‌ରେ ଆସି ପହଞ୍ଚି-ଗଲେଣି । କଣ ଭାଉଜ, ଦେହ ଭଲ ନାହିଁକି ? ଏପର୍ଯ୍ୟନ୍ତ କ'ଣ ବିଛଣାରୁ ଉଠିନାହଁ ?

ସେ ଏତେକ କହି କାମନା ଯୁକ୍ତ ଚକ୍ଷୁରେ ମତେ ଅନାଇ ହସିଲେ ।

କିନ୍ତୁ ଆଜି ମୁଁ ତାଙ୍କ ସହିତ କଥା ହେବାପାଇଁ ମଧ୍ୟ ଇଚ୍ଛୁ ନ ଥିଲି । ମୁଁ ଚୁପ୍‌ଚାପ୍ ବସି ରହିଲି । ସେ ଘର ବାହାରକୁ ଆସି ସ୍ୱାମୀଙ୍କୁ କହିଲେ, "ଆରେ ଭାଉଜଙ୍କ ଦେହ କିଛି ହୋଇଛି କି ?" ଆଜି କ'ଣ ସେ କଥାବାର୍ତ୍ତା ମଧ୍ୟ କରୁନାହାନ୍ତି । ଦେହ ନିଶ୍ଚୟ ଖରାପ ହୋଇଛି । ଭାଇ, ତମେ ଯାଇ ଡାକ୍ତରଙ୍କୁ ଡାକିଆଣ ।

"ଆରେ" ସ୍ୱେ ଜବାବ ଦେଲେ -- "ଆରେ ଭାଇ ସୁରେଶ ! ଶୁଣ ମାଲିକ ଦିନେ ରାତିରେ ତାଙ୍କୁ ଘରକୁ ଡାକିନେଲେ, ପ୍ରାସାଦରେ ସେ ଦିନେ ରହିଗଲା, କଣଟା କ୍ଷତି ହୋଇଗଲା ! ଆମେତ ତାଙ୍କର ପ୍ରଜା, ଯେମିତି ହେଲେ ତ କିଛି ସେବା ତାଙ୍କର କରିବାକୁ ପଡ଼ିବ ।"

"ଏବେ ତୁ ନିଜ ଶ୍ୱଶୁରଙ୍କୁ ବୁଝା, ଯେବେଠୁଁ ସେ ଆସିଛନ୍ତି ସେବେଠୁଁ ସେ ଖାଇବା ପିଇବା ଛାଡ଼ିଯାଇଲେଣି, କାହାସାଙ୍ଗରେ କଥାବାର୍ତ୍ତା କରୁନାହାନ୍ତି ।"

ସୁରେଶ ଏ ଖବର ଶୁଣି ଚଟାପଟ କହିପକାଇଲେ, "ବର୍ତ୍ତମାନ ମତେ ବଢ଼ିଆ ଖବରଟାଏ ମିଳିଥିଲା ମୋ କାଗଜପାଇଁ ଏବେ ମୋ ଚାକିରି ଯାଉଁ ଯାଉଁ ରହିଗଲା, ସମ୍ପାଦକ ମଧ୍ୟ ମୋ ଉପରେ ଖୁସି ହୋଇଯିବେ ।"

ସେ ତାଙ୍କୁ ଅଟକାଇଲେ, କିନ୍ତୁ ସୁରେଶ କହିଲେ ଆଜି ମୋ ପାଖରେ ସମୟ ନାହିଁ । ମୁଁ ଯାଉଛି ସମ୍ବାଦଟା ନେଇ ପୁଣି ଏଠିକୁ ଫେରିଆସିବି ।"

ଏତିକି କହି ସେ ଚାଲିଗଲେ । ମୁଁ ତାଙ୍କ କଥାରୁ କିଛି ଠଉରାଇ ପାରିଲି ନାହିଁ । ଦୁଇ ଚାରି ଦିନପରେ ଜୀବନଟା ଯଥାପୂର୍ବ ଗଡ଼ିଚାଲିଲା ।



## ॥ ପଞ୍ଚମ ଅଧ୍ୟାୟ ॥

ପାଖାପାଖି ମାସ ଦିନପରେ ସୁରେଶ୍ ଆମ ଘରକୁ ଆସିଲେ । ସାଙ୍ଗରେ ଆଉ ଜଣେ ଭଦ୍ରଲୋକ ନିଜ ବ୍ୟାଗରୁ ଖବରକାଗଜଟାଏ କାଢି ଦେଖାଇଲେ । ବଡ଼ ବଡ଼ ଅକ୍ଷରରେ ପ୍ରଥମ ପୃଷ୍ଠାରେ ହିଁ ଛପାହୋଇଥିଲା । ଏକ ନିଃସହ ସ୍ତ୍ରୀଲୋକ ଉପରେ ଗାଁ । ଜମିଦାରଙ୍କ ଧର୍ଷଣ....ଇତ୍ୟାଦି... ଇତ୍ୟାଦି ।

ସୁରେଶ ହସି କହିଲେ ବର୍ତ୍ତମାନ ସେ ଶଳା ଜମିଦାର ମଜା ବୁଝିବ ।

"ଆରେ ଦେଖ ଭାଉଜ ସାରା ଦେଶରେ ତମର ନାଁ ଲୋକେ ଜାଣିବେ । ଆଜି ଏ ଫଟୋଗ୍ରାଫରକୁ ସାଙ୍ଗରେ ଆଣିଛୁ । ତମର ଫଟୋ ଖବରକାଗଜରେ ଛପାହେବ । କେତେ ଲୋକ ଜାଣିବେ ।"

ମୁଁ ସୁରେଶକୁ ବହୁବାର ବୁଝାଇବାର ଚେଷ୍ଟାକଲି । କହିଲି ତାଙ୍କର କିଛି ଭୁଲ ନାହିଁ । ଶ୍ରେଷ୍ଠ ମାଲିକଙ୍କ ବିରୁଦ୍ଧରେ ଆମର କିଛି କହିବାର ନାହିଁ । ଦୟାକରି ତମେ ତାଙ୍କର ନାଁ । ଖବର କାଗଜରେ ଛାପ ନାହିଁ । କିନ୍ତୁ ସେ ଶୁଣିଲେ ନାହିଁ । କହିଲେ "ଫଟୋ ଉଠାଇବା ପାଇଁ ଯଲଦି ରେଡ଼ି ହୋଇଯାଅ ନ ହେଲେ ଖରା ଆସିଗଲେ ଫଟୋ ଭଲ ଉଠିବ ନାହିଁ ।"

ମୁଁ ନିଜର ଶାଢ଼ୀ ବଦଳାଇଲି—ବାପିକୁ ସଜାଡ଼ିଲି — ।

ସେ କହିଲେ "ଏ ଶାଢ଼ୀ ହେବନାହିଁ, ଚଉପଟା ଶାଢ଼ୀ ପିନ୍ଧି ଆସ । ବାପିକୁ ଅସଜଡ଼ା କର ।" ସେ ମୋ ପାଖକୁ ଆସିଲେ ମୋ ବାପିକୁ ଅସଜଡ଼ା କରିଦେଲେ, ବ୍ଲାଉଜର ଗୋଟେ ଦୁଇଟା ବୋତାମ ଖୋଲିଦେଲେ କହିଲେ ବର୍ତ୍ତମାନ ଠିକ୍ ହେଲା ।

ଫଟୋଗ୍ରାଫର ମୋର ବିଭିନ୍ନ ଅବସ୍ଥାରେ କେତେ ଗୁଡ଼ିଏ ଫଟୋ ନେଲେ—ଆମ ଘରର ଫଟୋ ମଧ୍ୟ ନେଲେ—ଆଉ ସେ ଦୁହେଁ ଗୁଲିଗଲେ ।

ପରଦିନଠାରୁ ସାମ୍ବାଦିକମାନଙ୍କର ଲମ୍ବା ଧାଡ଼ି ଆମ ଘର ଆଗରେ ଲାଗିଗଲା । ବିଭିନ୍ନ ରାଜନୈତିକ ଦଳର ନେତାମାନେ ମଧ୍ୟ ଆମ ଘର ଆଗରେ ଭିଡ଼ ଲଗାଇଲେ । ଓଲଟା ସିଧା ନାନା ପ୍ରଶ୍ନ କଲେ— ବିଭିନ୍ନ ଆଇନ କାନୁନ୍‌ର କଥା ମୋତେ ଶୁଣେଇବାରେ ଲାଗିଲେ । କିନ୍ତୁ ମୋର ମୁଣ୍ଡରେ କିଛି ପଶୁନଥିଲା ।

ମୁଁ ଅଉ ସେ ସେମାନଙ୍କର ହାତ ଗୋଡ଼ ଧରି ମିନତି କଲୁ - "ଭାଇମାନେ ଆମକୁ ଛାଡ଼ିଦିଅ—ଆମର କାହାକୁ କିଛି କହିବାର ନାହିଁ । ଆମ ଉପରେ କେହି ଅତ୍ୟାଚାର କରିନାହାନ୍ତି ।"

ଆମ କଥାକୁ ସମସ୍ତେ ହସି ଉଡ଼ାଇଦେଲେ । କେହି କେହି ନେତାମାନେ କହିବାର ମୁଁ ଶୁଣିଲି — 'ହରପ୍ରତାପ ପୁଣି ଲୋକସଭାପାଇଁ ନିର୍ବାଚନ ଲଢୁଛନ୍ତି ।, ଦେଖିବା ଏପରି ଚରିତ୍ରର ଲୋକ କିପରି ଜିତୁଛନ୍ତି ?. ସ୍ୱାଙ୍କର ଏସବୁ କାର୍ଯ୍ୟ ଆମେ ଜନସାଧାରଣଙ୍କ ଆଗରେ ପେଶ କରିବା । ବିରୋଧି ଦଳର ନେତାମାନେ କୁହାକୁହି ହେଲେ ଯାହାହେଉ ଜଣେ ତ

•

ହାରଗଲା, ଆମ ପାର୍ଟିର ଏହା ଏକ ସୁବର୍ଣ୍ଣ ସୁଯୋଗ । ଏହା ହିଁ ଆମ ପାଇଁ ଏକ ବଡ଼ ଅସ୍ତ୍ର ।

ପରେ ଖଦଡ ଶାଢ଼ୀ ପିନ୍ଧି ତନି ଚାରି ଜଣ ସ୍ତ୍ରୀଲୋକ ଆମ ଘରକୁ ଆସିଲେ । କହିଲେ ଝିଅ ତୁମେ ଡର ନାହିଁ, ଆମର ମହିଳା ସମିତିର ସଭ୍ୟାମାନେ ଏଠିକୁ ଆସିଛନ୍ତି ତମର ଖବର ବୁଝିବାକୁ । ସ୍ତ୍ରୀମାନଙ୍କ ଉପରେ ଏ ବଳାତ୍କାରର ପ୍ରତିଶୋଧ ନେବା ପାଇଁ ଉପଯୁକ୍ତ କାର୍ଯ୍ୟକ୍ରମ ସ୍ଥିର କରିବା ପାଇଁ ପଡ଼ିବ । ନାରୀ ଜାତିର ଅଧିକାର ଫେରାଇ ଆଣିବାକୁ ସଂଗ୍ରାମ କରିବାକୁ ପଡ଼ିବ । ପୂର୍ବରୁ ହୋଇ ଆସୁଥିବା ଅତ୍ୟାଚାରକୁ ଆଉ ବରଦାସ୍ତ କରାଯିବ ନାହିଁ । ଆମେ ତମକୁ ଦିଲ୍ଲୀ ନେଇଯିବୁ ସେଠାରେ ସଭାସମିତି କରାଇ ଇନ୍ଦିରାଗାନ୍ଧୀଙ୍କ ପାଖରେ ଆପତ୍ତି ଜଣାଇବା । ତୁମର ଦୁଃଖ କାହାଣୀ ପ୍ରଧାନ-ମନ୍ତ୍ରୀଙ୍କୁ କହିବା । ଆମେ ତୁମର ବନ୍ଧୁ । ସେ ରାକ୍ଷାସକୁ ଉପଯୁକ୍ତ ଦଣ୍ଡ ନ ଦେଲେ ଆମେ ନିଃଶ୍ୱାସମାରିବୁ ନାହିଁ ।

ମୁଁ ସେମାନଙ୍କ କଥା ଶୁଣି ଡରିଲେ କହିଲି ଆପଣମାନେ ଏତେ ପରିଶ୍ରମ କରି ଆସିଛନ୍ତି, ବସନ୍ତୁ । କିନ୍ତୁ ମୋର କୌଣସି ଦୁଃଖ ନାହିଁ, ଅନୁଶୋଚନା ନାହିଁ । ଯଦି ଆପଣମାନେ ମୋର ପିଛା ନ ଛାଡନ୍ତି ତେବେ ଆମେ ଆତ୍ମହତ୍ୟା କରି ମୃତ୍ୟୁକୁ ବରଣ କରିନେବୁ । ଏସବୁ ବଡ଼ଲୋକଙ୍କ କଥା ସେମାନଙ୍କୁ ସୁହାଏ । ଆମ ଗରିବଙ୍କ ପାଇଁ ଏସବୁ ଲାଗୁ ନୁହେଁ । ମୋର ଦିଲ୍ଲୀ ଯିବାର ନାହିଁ କି ଆପଣମାନଙ୍କ କାର୍ଯ୍ୟକ୍ରମରେ ଯୋଗ ଦେବାର ନାହିଁ । ଆପଣ ଦୟାକରି ଆମ ପଛରେ ଲାଗିବା ଛାଡ଼ିଦିଅନ୍ତୁ ଆଉ ଆମକୁ ମୁକ୍ତ ଦିଅନ୍ତୁ ।

•

ପରେ ଜଣାପଡ଼ିଲା, ସେମାନେ ସବୁ ଶ୍ରେଷ୍ଠ ମାଲିକଙ୍କୁ ମଧ୍ୟ ସାକ୍ଷାତ କରିବା ପାଇଁ ଯାଇଥିଲେ କିନ୍ତୁ ସେମାନଙ୍କୁ ଗେଟ୍ ବାହାରୁ ବିଦା-କରି ଦିଆଗଲା । ସେମାନେ ଦିନସାରା ସେହି ଗେଟ୍ ପାଖରେ ଧାରଣା ଦେଲେ ।

କିନ୍ତୁ ଯେତେବେଳେ କିଛି ସୁବିଧା ହେଲା ନାହିଁ, ସେମାନେ ଗାଡ଼ିଧରି ପୁଣି ସହର ଚାଲିଗଲେ ।

ଦିନଦାରା ଆମେ ଦୁହେଁ ସ୍ୱାମୀ ସ୍ତ୍ରୀ ଚିନ୍ତାକଲୁ ଚାଲ କୁଆଡ଼େ ପଳାଇବା ନହେଲେ ଏମାନେ ଆମ ପିଚ୍ଛା ଛାଡ଼ିବେ ନାହିଁ ।

ସେ କହିଲେ ଆମେ ଯିବୁ କୁଆଡ଼େ, ଏପରି ପରିସ୍ଥିତିରେ କିଏ ବା ଆମକୁ ଶରଣ ଦେବ ।

ମୋର 'ରାଜନଗର' ମିଲର ମାଙ୍କ କଥା ମନେ ପଡ଼ିଗଲା । ସେ ମଧ୍ୟ ମାନିଗଲେ ।

ଠିକ୍ ଅଛି କାଲି ଛୁଟି ନେଇ ତତେ ଯାଇ ସେଠି ଛାଡ଼ିଆସିବି, କିଛି ଦିନ ଗଲାପରେ ସବୁ ଠିକ୍ ହୋଇଯିବ ।

ସେ କାମକୁ ଗଲେ । ପରେ ପରେ ପୁଲିସର ଶବ୍ଦ । ମୁଁ ବାହାରକୁ ଯାଇ ଦେଖେତ ଗାଡ଼ିରେ ପୁଲିସବାଲା ଭର୍ତ୍ତି ହୋଇ ଆସିଛନ୍ତି । ମୁଁ ଦଉଡ଼ିଯାଇ ଘରଭିତରେ ଲୁଚିଗଲି । ସେମାନେ ଆସି କିଛି ସମୟ କବାଟ ବାଡ଼େଇଲେ । ଚିତ୍କାର କଲେ କିଏ ଅଛ, କବାଟ ଖୋଲ । ମୁଁ ଜବାବ ଦେଲି ନାହିଁ । ଚୁପଚାପ ରହିଲି । ସେମାନେ ଗାଳିଦେଇ ଚାଲିଗଲେ ।

ପିଲାଦିନୁ ମୋର ପୁଲିସ ପ୍ରତି ଭୟଥିଲା । ମାଆ ମଧ୍ୟ ମୋତେ ପୁଲିସ୍ ଭୟ ଦେଖାଇ କାମ କରାଇ ନେଉଥିଲା ପୁଲିସର ନାଁ ଶୁଣିଲେ ମୁଁ ଡରୁଥିଲି ।

ମୁଁ ଧୀରେ କବାଟ ଫାଙ୍କରେ ଅନାଇଲି—ସେମାନେ ଜମିଦାରଙ୍କ ପ୍ରସାଦ ଆଡ଼କୁ ଚାଲିଥିଲେ ।

ମୁଁ ନିଶ୍ୱାସ ମାରିଲି -- ଯାହାହେଉ ଆଜି ଦିନଟା କଟିଗଲା । କାଲି ତ ମୁଁ ଏଠାରୁ ପଳାଇବି ।

କିନ୍ତୁ ଏ କଣ ହେଲା, ଦୁଇ ତିନି ଘଣ୍ଟା ପରେ ସେମାନେ ପୁଣି ଆସିଲେ । ପ୍ରାସାଦରେ ଖାଇ ପିଇ ଖୁବ୍ ତୃପ୍ତିରେ ସେମାନେ ଆସୁଥିଲେ । ସେମାନଙ୍କ ସାଥିରେ ମୋର ସ୍ୱାମୀ ମଙ୍ଗଳ ମଧ୍ୟ ଥିଲା । ସେମାନଙ୍କ ପକେଟ ଏବଂ ମିଜାଜ୍ ଖୁବ୍ ଗରମ ଥିଲା ଭଳି ମନେ ହେଉଥିଲା ।

ଆସୁ ଆସୁ ସେମାନେ କହିଲେ—ଚୁପ୍ ଚୁପ୍ ଆମ ସାଙ୍ଗରେ ଆନକୁ ଚାଲ ।

ସେ ତାଙ୍କର ଗୋଡ଼ ଧରି ପକାଇଲେ । "ସରକାର ! ଆମେ ସବୁ ଗରିବ ଲୋକ, ଆମର କାହା ବିଷୟରେ କିଛି କହିବାର ନାହିଁ । ମାଲିକ ଆମର ଅନ୍ନଦାତା । ତାଙ୍କ ବିରୁଦ୍ଧରେ ଆମର କିଛି ଅଭିଯୋଗ ନାହିଁ । ଆପଣ ଆମକୁ କ୍ଷମା ଦିଅନ୍ତୁ । ଆମେ ଗ୍ରେଟଲୋକ । ମୋ ସ୍ତ୍ରୀକୁ ଆପଣ ଛୁଟି ଦିଅନ୍ତୁ । ମୁଁ ତାକୁ ନେଇ ଅନ୍ୟ ଆଡେ ପଳାଇବି ।"

ମୁଁ ମଧ୍ୟ ପୁଲିସବାଲାଙ୍କୁ ଅନୁରୋଧ କଲି— "ଯାହା ଆପଣଙ୍କର ପଚାରିବାର କଥା ପଚାରନ୍ତୁ କିନ୍ତୁ ଆମକୁ ଛୁଟି ଦିଅନ୍ତୁ । ଥାନାକୁ ନିଅନ୍ତୁ ନାହିଁ ।"

କିନ୍ତୁ ସେମାନେ କିଛି ଶୁଣିଲେ ନାହିଁ । ଯିବା ସମୟରେ ମୁଁ ମୋର ସ୍ୱାମୀଙ୍କୁ ସାଙ୍ଗରେ ନେବା ପାଇଁ କହିଲି—"କହିଲି ସେ ମଧ୍ୟ ଚାଲନ୍ତୁ, ପଚରା ଉଚରା ପରେ ଆମେ ଦୁହେଁ ପୁଣି ଫେରି ଆସିବୁ ।"

କିନ୍ତୁ କଂସେଇମାନେ କିଛି ଶୁଣିଲେ ନାହିଁ । ପୁଲିସ ଗାଡ଼ିରେ ମୋତେ ବସାଇ ନେଇଗଲେ । ସେ ପଛରୁ ଡାକ କହୁଥିବାର ଶୁଣିଲି—

"ବାପଯ୍ୟା, ତୁ ଡ଼ରବୁ ନାହିଁ ମୁଁ ମାଲିକଙ୍କୁ କହି ତତେ ମୁକୁଳାଇ ଆଣିବି । ସାହସ ହରାଇବୁନ, ବୁଝିଲୁ ।"

ଦୁଇ ତିନି ଘଣ୍ଟା ପରେ ମୁଁ ଥାନାରେ ପହଂଚିଲି । ସନ୍ଧ ହୋଇ ଯାଇଥିଲା । ମତେ ଅଫିସ ଭିତରେ ଗୋଟିଏ ରୁମରେ ବସେଇ ଦେଇ ସେମାନେ ସବୁ ବାହାରକୁ ଚାଲିଗଲେ ।

କିଛି ସମୟ ପରେ ଗୋଟିଏ ସିପାହୀ ପତ୍ରରେ କିଛି ଖାଇବାକୁ ନେଇ ଆସିଲା । ମୋର ତା ମୁହଁକୁ ଚାହିଁବାକୁ ଜମା ଇଚ୍ଛା ହେଉ ନଥିଲା ।

ମୁଁ କହିଲି— "ଜଲ୍‌ଦି ଯାହା ପଚାରିବାର କଥା ପଚାର ଆଉ ମତେ ଛୁଟି ଦେଇ ଦିଅ ।"

ସେ ଅଭଦ୍ରଙ୍କ ଭଳିଆ ହସି ଜବାବ ଦେଲା- "ଏତେ ଜଲ୍‌ଦି କାହିଁକି ? ବ୍ୟସ୍ତ ହେବାର କିଛି ନାହିଁ ।" ତା କଥାଗୁଡ଼ାକ ମତେ ଭଲ ଲାଗିଲାନାହିଁ ମୁଁ ଚୁପ୍ ଚୁପ୍ ବସିରହିଲି । ପରେ ଆଉ ଦୁଇଜଣ ସିପାହୀ ମୁଁ ବସିଥିବା କୋଠରୀ ଭିତରକୁ ପଶି ଆସିଲେ ଏବଂ ତାଙ୍କ ଭିତରୁ ଜଣେ ମୋ ହାତ ଧରି ଟଣାଟଣି କଲା । ଆଉ ଜଣେ କହିଲା "ଆରେ ବର୍ତ୍ତମାନ ଥାଉ, ଆଗେ ଦାରୋଗାବାବୁ ଭୋଗରେ ଲାଗି ଯାଉ, ତାପରେ ଆମେ ବୁଢ଼ େ ପ୍ରସାଦ ପାଇବା ।"

ସେମାନେ ମୋର ହାତ ଧରି ସାଙ୍ଗରେ ନେଇଗଲେ । ମୁଁ ବଳିକୁ ଯାଉଥିବା ଛେଳି ପରି ତାଙ୍କ ସାଙ୍ଗରେ ଟାଣି ହୋଇଗଲି ।

ଥାନା ପଛପଟେ ଗୋଟିଏ ଛୋଟିଆ ଘରଟିଏ । ସେ ଘର ଭିତରକୁ ମତେ ନଆଗଲା । ସେ ଘର ଭିତରେ ଦୁଇ ତିନିଜଣ ହୃଷ୍ଟପୁଷ୍ଟ ପୁରୁଷ ବସି ମଦ ପିଉଥିଲେ । ମତେ ଦେଖି ତାଙ୍କ ମୁହଁର ରଙ୍ଗ ବଦଳିଗଲା ।

"ଯ୍ୟାକ୍ର ଭିତରେ କମରାକୁ ନେଇଯାଅ — ଆଉ ନଜର ରଖ ଯେପରି ପଳାଇ ନଯାଏ ।" ଜଣେ ସିପାହୀକୁ ହୁକୁମ ଦେଲା ।

ହଁ ଯଦି ତାକୁ ଭୋକ ଲାଗୁଛି ତେବେ କିଛି ଖାଇବାକୁ ଦେଇଦିଅ । ସେମାନେ ଗୋଟେ ଗ୍ଲାସ୍ ଦେଶୀ ମଦ ଆଣିଲେ ଆଉ ମୋ ମୁହଁରେ ଢାଳି ଦେଲେ । ମୋ ତଣ୍ଟି ଭିତରକୁ କିଛିଟା ଗଲାଗଲା ଆଉ କିଛି ବାହାରେ ପଡ଼ିଗଲା । ଦାରୋଗା ବାବୁଙ୍କ ଅଫିସର ଜଣକ ଜୋରି ଉଠି କହିଲେ— "ଦେଖ୍ ଟୋକା, ଆମେ ଯାହା କହିବୁ ତୁ ଚୁପଚାପ୍ କରି ଦେଇ ଯା । ଯଦି ପାଟି କରିବୁ ବା ପଳେଇବା ପାଇଁ ଚେଷ୍ଟା କରିବୁ ତେବେ ବାହାରେ ଗୁରୁ-ପଟେ ସିପାହୀ ଅଛନ୍ତି, ତୋତେ କାଟି କୁଟି କୁକୁରକୁ ଦେଇଦେବେ ।"

ମୁଁ ଡରି ଘରର ଗୋଟିଏ କୋଣରେ ଲାଗି ଗଲି । ମୋ ଦେହରୁ ଜୀବନ ଚାଲିଗଲା ପରି ଲାଗିଲା ।

ମୁଁ କାନ୍ଦିଲି, ସେମାନଙ୍କର ଦୟା ଭିକ୍ଷା କଲି, କିନ୍ତୁ ସେମାନେ କିଛି ଶୁଣିଲେ ନାହିଁ ।

ଦେଶ କାଳ ସମସ୍ତ କଥା କିଛି ଜ୍ଞାନ ରହିଲା ନାହିଁ । ଅଫିସର ଠାରୁ ଆରମ୍ଭ କରି ଦାରୋଗା ଆଉ ସିପାହୀ ପର୍ଯ୍ୟନ୍ତ ସମସ୍ତଙ୍କର ଖାଦ୍ୟ ହୋଇ ବାବନ୍ଧୁତ ହେଲି । କେହି କିଛି ଶୁଣିଲେ ନାହିଁ ।

ମୁଁ ଭଗବାନଙ୍କର ନାଆଁ ଧରି ଡାକିଲି । କିନ୍ତୁ କଳିଯୁଗରେ ମଧ୍ୟ ସେ ମୋର ସାହା ହେବା ପାଇଁ ଆସିଲେ ନାହିଁ । ମୁଁ ଏ ଜୀବନରେ ବଂଚି ରହି ଏ ପୃଥିବୀରେ ହିଁ ନର୍କ ଯନ୍ତ୍ରଣା ଭୋଗ କରୁଛି । ଏ ପାପୀର ଜୀବନ ବିତାଇ ବଂଚି ରହିଛି କିପରି ? ଆଉ ଏ ଜୀବନରେ କଷ ବା କଲିକା ରହିଲା?

ଲୁହ ବହିବା ସାଙ୍ଗେ ସାଙ୍ଗେ ମୋର ଗର୍ଭ ବେଦନା ବଢ଼ିବାରେ ଲାଗିଲା । ମୁଁ ଯନ୍ତ୍ରଣାରେ ଛଟପଟ ହୋଇ ବେହୋସ୍ ହୋଇଗଲି ।

ଯେତେବେଳେ ମୋ ହୋଶ୍ ଆସିଲା ସେତେବେଳେ ମୁଁ ନିଜକୁ ଏକ ସରକାରୀ ହସ୍ପିଟାଲ୍‌ରେ ଆବିଷ୍କାର କଲି । ମୋ ଦେହ ଦୁର୍ବଳ ହୋଇ ପଡ଼ିଥିଲା । ନର୍ସ ମଧ୍ୟ ମୋ ଆଡ଼କୁ ଘୃଣା ଦୃଷ୍ଟିରେ ଅନାଇ ରହିଥିଲା । କିନ୍ତୁ ମୁଁ ନାଗ୍ଭର ଥିଲି ।

ମୋତେ ମୋର ସ୍ୱାମୀଙ୍କ ଚିନ୍ତା ସବୁବେଳେ ଘାରୁଥିଲା । ସେ ପ୍ରକୃତରେ ଦେବତା ଥିଲେ । ଥରେ ମୁଁ ତାଙ୍କ ପାଖରେ ପହଞ୍ଚି ଯାଏଁ, ପୁଣି ଆମେ ଦୁହେଁ କୁଆଡ଼େ ଚାଲିଯାଇ ଏ ସବୁ ଭୁଲିଯାଇ ନୂଆକରି ଜୀବନ ଆରମ୍ଭ କରିବା ।

କିନ୍ତୁ ପୁଣି ଥରେ ପୁଲିସ୍‌ଙ୍କ ଭୟ ଆଉ ଦୌରାତ୍ମ୍ୟ ମୋତେ ଭୟଭୀତ କରି ପକାଇଲା । ସେମାନଙ୍କ କଥା ଭାବିଲେ ହିଁ ମୋ ରୁମ ଠାକୁରି ଉଠୁଥିଲା । ଆଉ ଏମିତିଆ ମୁଁ କଦାପି ହେବାକୁ ଦେବିନି ।

ତା ପରଦିନ ଅନ୍ୟସବୁ ରୋଗୀମାନଙ୍କର ଘରୁ ବନ୍ଧୁବାନ୍ଧବମାନେ ଆସିଲେ । ହସ୍‌ପିଟାଲ୍‌ରେ ଭିଡ଼ ହେଲା । ନର୍ସମାନେ ମଧ୍ୟ ଏହି ସାକ୍ଷାତକାର ସମୟଟାକୁ ଉପଭୋଗ କରିବାପାଇଁ ନିଜର ଡ୍ୟୁଟି ରୁମ୍‌କୁ ଚାହା ପିଇବା ପାଇଁ ଏବଂ ଗପିବାପାଇଁ ଚାଲିଗଲେ । ମୁଁ ଏହି ସମୟଟାକୁ ଉପଯୁକ୍ତ ସମୟ ବୋଲି ଭାବି ଧୀରେ ଧୀରେ ବିଛଣାରୁ ଉଠି କେହି ନଜାଣିଲା ପରି ହସ୍‌ପିଟାଲ୍ ବାହାରକୁ ଆସିଲି ଆଉ ଧୀରେ ହସ୍‌ପିଟାଲ ଗେଟ୍ ବାହାରକୁ ଆସି ରିକ୍‌ସାଟିଏ ଧରି ଷ୍ଟେସନ୍ ପହଞ୍ଚିଲି । ସୈନିକମାନେ, ମୋର ସବୁ ଅଳଙ୍କାର ନେଇଯାଇଥିଲେ, କେବଳ ଆଙ୍ଗୁଠିରେଥିବା ମୁଦିଟାକୁ ଛାଡ଼ି ଦେଇଥିଲେ । ମୁଁ ସେ ମୁଦିଟିକୁ ଷ୍ଟେସନ୍ ବାହାରେ ଏକ ଦୋକାନରେ ବିକି-

ଦେଲି । ହୋଟେଲରେ ଖାଇ ଷ୍ଟେସନ୍‌ରେ ବିଶ୍ରାମ ରୁମ୍‌ରେ ରେଳଗାଡ଼ିକୁ ଅପେକ୍ଷାକଲି । କାଳେ କିଏ ଦେଖି ଚିହ୍ନିପକାଇବ ଏଥିପାଇଁ ଦ୍ୱିତୀୟ ଶ୍ରେଣୀର ଅପେକ୍ଷାଶାଳା ଗୃହରେ ଲୁଚି ଅପେକ୍ଷା କଲି । ଟ୍ରେନ୍ ଆସିଲା ମାତ୍ରେ ସ୍ତ୍ରୀ ଲୋକମାନଙ୍କ ପାଇଁ ରିଜର୍ଭ ଥିବା ଡବାରେ ଚଢ଼ିଗଲି । ଡବାରେ ଲାଇଟ୍ ନଥିଲା । ସେଇଟା ମୋପାଇଁ ଆଶ୍ୱସ୍ତିର କାରଣ ହେଲା । ଯେତେବେଳେ ଗାଡ଼ି ଚାଲିବାପାଇଁ ଆରମ୍ଭକଲା ମୋ ଦେହରେ ଜୀବନ ପଶିଲା ।

ରାତିସାରା ମୁଁ ଶୋଇ ପାରିଲି ନାହିଁ କେବଳ ତାଙ୍କର କଥା ମନେ ପଡ଼ୁଥିଲା । ମୁଁ ଭାବୁଥିଲି ଯେତେବେଳେ ସକାଳେ ମୁଁ ଘରେ ପହଞ୍ଚିବି ସେତେବେଳେ ସେ ମତେ ଦେଖି ଖୁସିରେ ନିଜ ଛାତି ଉପରକୁ ଆଉଜାଇ ନେବେ । ଭଲ ମନ୍ଦ ପଚାରିବେ, ଗରମ ଗରମ ଚାହା ପିଆଇବେ ।

ମୁଁ ତାଙ୍କୁ ଆଉ କଲେଜକୁ ଯିବାପାଇଁ ଦେବିନାହିଁ । ଦିନସାରା ଆମେ ଖାଲି ଗପରେ କଟାଇ ଦେବୁ । ସେ ମୋର ତାଙ୍କ ବଡ଼ ଉଦାର ହୃଦୟରେ ସବୁ କ୍ଷମା କରିଦେବେ ଆଉ ମତେ ଆଦରି ନେବେ ।

ରାତି ତିନିଟାରେ ଗାଡ଼ି ରାଜନଗର ଷ୍ଟେସନ୍ ପହଞ୍ଚିଲା । ସେଠି ଷ୍ଟେସନ୍‌ରେ ଓହ୍ଲାଇ ରାତି ପାହିଲା ପର୍ଯ୍ୟନ୍ତ ଷ୍ଟେସନ୍‌ରେ ଅପେକ୍ଷା କଲି । ଗାଁକୁ ଯାଉଥିବା ବଳଦ ଗାଡ଼ିଟିଏ ଦେଖି ସେଥିରେ ବସି ଗାଁକୁ ଚାଲିଗଲି । ହୃଦୟଟା ଖୁସିରେ ନାଚି ଉଠୁଥିଲା । ବଡ଼ ବଡ଼ ପାହୁଣ୍ଡ ପକାଇ ଘରକୁ ଦଉଡ଼ି ଗଲି । ହେଲେ ଯେ କ'ଣ ବାହାରେ ଦୁଇଟା ବଡ଼ ବଡ଼ ତାଲା । ମନରେ ଶଙ୍କା ପଶିଗଲା । ପୁଣି ମନଟା କହିଲା "ବୋଧେ ସେ ରାତି ଡ୍ୟୁଟିକୁ ଯାଇଥିବେ ଆଉ ବର୍ତ୍ତମାନ ଫେରୁଥିବେ ।"

ମୁଁ ବାହାର ବାରଣ୍ଡାରେ ଅପେକ୍ଷା କଲି । ଦିନ ବଢ଼ିବାରେ ଲାଗିଲା । ଦେଖିଲି ପଡ଼ୋଶୀମାନଙ୍କର ଛୁଆପିଲାମାନେ ଆସି ମତେ ଅନେଇ-ବାକୁ ଲାଗିଲେ । ମୁଁ ତାଙ୍କୁ ଡାକିଲି । ସେମାନେ ନଶୁଣି ଚାଲିଗଲେ ।

ଯେତେବେଳେ ବହୁତ ଡେରି ହୋଇଗଲା ସେ ଫେରିଲେ ନାହିଁ ମୁଁ ପାଖ ପଡ଼ୋଶୀଙ୍କୁ ପଚାରିଲି ସେମାନେ କବାଟ ଖୋଲିବା ପରିବର୍ତ୍ତେ ବନ୍ଦ କରିଦେଲେ ।

ମୋତେ ବୁଝାପଡ଼ିଲା ନାହିଁ ମୁଁ କଣ କରିବି । ମୋତେ ମୋର ଲେଖା ଯୋଖା ଖୁଡ଼ୀର କଥା ମନେ ପଡ଼ିଲା ଯିଏ ମତେ ଦେଖିବାପାଇଁ ଆସୁଥିଲା । ମୁଁ ତାକୁ ଦେଖା କରିବାପାଇଁ ଗଲି । ସେ ସେତେବେଳକୁ ବାହାରେ ଗାଈମାନଙ୍କୁ ଖାଇବାକୁ ଦେଉଥିଲା ।

ମତେଦେଖି ସିଏ ଚମକିଗଲା । ସେ ଭାବିଲା ସତେ ଯେପରି ମୁଁ ଭୂତଟିଏ ହୋଇ ତା ସାମ୍ନାରେ ଠିଆ ହୋଇଛି । ମୁଁ ତାକୁ ପାଦଛୁଇଁ ନମସ୍କାର କଲି । ସେ କହିଲା ।

"କିଏ ବନ୍ଧିଆ ? ତୁ କେମିତି ଗାଁକୁ ଆସିଲୁ । ମୁଁ ତାଙ୍କ କଥା ପଚାରିଲି— ସେ କହିଲା ଘରଭିତରକୁ ଚାଲ୍ ସବୁ କଥା କହିବି ବାହାରେ କହିବା ବିପଦ ଜନକ ।"

ସେ ପୁଣି କହିଲା— "ଯେଉଁଦିନ ତୋତେ ପୁଲିସ୍ ଧରିନେଇଥିଲା, ସେଦିନ ରାତିରେ ଜମିଦାର ଘର ସିପାହୀ ଆସି ମଙ୍ଗଲକୁ ଧରିନେଇଗଲେ । ସେ ମଧ୍ୟ କହିକରି ଗଲା ଯେ ମାଲିକଙ୍କୁ କହି ତତେ ଛଡ଼ାଇ ଆଣିବ । ସେ ଦିନ ପରେ ଆଉ ସେ ଫେରି ନାହିଁ । ସେ ବୋଧେ ଆଉ କେବେ ଫେରିବ ମଧ୍ୟ ନାହିଁ ।

ସେ ଆଖିରୁ ଲୁହ ଝରୁଥିଲା ଆଉ ସେ କହିଲା "ମୁଁ ସବୁ ବଡ଼ ଧନୀ ଲୋକମାନଙ୍କର ନିଯ୍ୟମ କାନୁନ୍ ବିଷୟରେ ଜାଣିଛି ।"

ତୋର ଦାଦାର ମଧ୍ୟ ଏହି ଦଶା ହେଲା । ସେ କଣ ସବୁ ବଡ଼ ମାଲିକଙ୍କୁ କହିଲା । ବଡ ମାଲିକ ତାକୁ ଧରି ନେଇଗଲେ । ସେ ଆଜି ଯୁଁଦ୍ଧା ଫେରିଲା ନାହିଁ । ଶ୍ରେଷ୍ଠ ପିଲାଗୁଡ଼ା ମୋର କି ଅବସ୍ଥା ନ ହେଉଛନ୍ତି ।

ତୁ ମୋ କଥା ମାନୁ, ଏଠୁଁ ଘଲିଯା ପଳା ।" "ମାଲିକ ତତେ ପୁଣି ଖୋଜୁଛନ୍ତି ।"

ମୁଁ ଡରକରି ଆଈର ଗୁଣ୍ଡରେ ମୁଣ୍ଡ ଗୁଞ୍ଜିଲି । କାନ୍ଦ ପକାଇ କହିଲି "ମୁଁ ଏବେ କ'ଣ କରେ ଆଈ କୁଆଡେ ଯିବି ଏ କଳା ମୁହଁ ନେଇ । କିଏ ମୋତେ ଶରଣ ଦେବ । ମୋ ପାଖରେ କିଛି ପଇସା ମଧ୍ୟ ନାହିଁ ।"

ସେ ବଡ ସ୍ନେହରେ ମୋ ପିଠିରେ ହାତଦେଇ ସହାନୁଭୂତି ସହ କହିଲା "ତୁ ଡର ନାହିଁ ଝିଅ, ସାହସର ସହିତ କାମ କର । ମୁଁ ମୁଁ ତୋ ହୃଦୟର ଦରୁବ୍ୟଥା ବୁଝି ପାରୁଛି ।"

ମୋ ପାଖରେ ମଧ୍ୟ ବେଶି ଟଙ୍କା ନାହିଁ । କୁଧ ବକା ଟଙ୍କା କିଛି ଅଛି ସେ ଠେକରେ । ତୁ ଟିକଟ କରି ଟ୍ରେନରେ ବସି ଚାଲିଯା ।

ପାଟଣାରୁ ତୋର ଯେଉଁ ଦଅର ଅଛନ୍ତି ତାଙ୍କର ପାଖକୁ ଚାଲିଯା । ତୋଟି ତ ତାଙ୍କ ସାଙ୍ଗରେ ଭଲ ଥିବ— ସେ ତୋତେ ସାହାଯ୍ୟ ଦେଇପାରନ୍ତି ।

ଝୁଗ୍ଗିର କଥା ମୁଁ ବୁଝି ପାରିଲି । ଦିନସାରା ମୁଁ ତା ଘରେ ରହି ଭଲରେ ଟିକିଏ ଖିଆପିଆ କଲି । ସନ୍ଧ୍ୟାବେଳକୁ ତା ପିଲାମାନେ ଖେତିରୁ ଫେରିଲେ । ତା ବଳଦ ଗାଡିରେ ପରଦା ଢାଙ୍କି ଷ୍ଟେସନ ଚାଲିଲି ।

ଯେମିତ ରେଲଗାଡ଼ି ଷ୍ଟେସନ ଛାଡ଼ିଲା, ଖୁଡ଼ୀପାଇଁ କୃତଜ୍ଞତାରେ ମୋ ଆଖିରୁ ଲୁହ ବୋହିଗଲା । ସେ ମୋତେ ନିଜ ଗୁଡ଼ରେ ଲଗାଇ ଅଖିବନ୍ଦ କଲା । ଆଉ ହାତରେ ଖାଇବାର ଥଳିଟିଏ ଦେଲା । ଆଉ ବାଟରେ ଖର୍ଚ୍ଚ କରିବା ପାଇଁ ଦଶଟଙ୍କା ଦେଲା ।

ଗାଡ଼ିସାରା ମୁଁ ଭାବିଲି, ବିଧିର ବିଧାନ କି ବିଚିତ୍ର । ନିଜଲୋକ ପର ହୋଇ ଯାଉଛି ଏବଂ ସିଏ ପର ସେ ନିଜର ପାଲଟି ଯାଉଛି । ଦେଶର ରକ୍ଷକ ପୁଣି ଭକ୍ଷକ ପାଲଟି ଯାଉଛି । ମୋର ଏ ସୌନ୍ଦର୍ଯ୍ୟ ଶେଷକୁ ମୋର କାଳ ହେଲା । ହେ ଭଗବାନ ! ଏ ସୁନ୍ଦର ରୂପ ତୁ କାହାକୁ ଦେନା ।

ପରଦିନ ଲଞ୍ଚରେ ଚଢ଼ି ପାଟନା ଗଲି । ଲଞ୍ଚରେ ଗଲାବେଳେ ଗଙ୍ଗାର ପବିତ୍ର ଜଳରେ ନିଜର ଦେହ ହାତ ଧୋଇ ମନକୁ ପରିଷ୍କାର କରିନେଲି ।

ଶୁଣିଥିଲି—ଗଙ୍ଗାମାତା ସବୁ ପାପକୁ ଦେହରୁ କାଢ଼ି ଦେହ ମନକୁ ପବିତ୍ର କରିଦିଏ ।

ଲଞ୍ଚର ବାଡ଼ା ଧରି ସୂର୍ଯ୍ୟଙ୍କର ପ୍ରଖର କିରଣକୁ ଉପଭୋଗ କଲି । କାଲେ ମୋ ଜୀବନରେ ପୁଣି ସୂର୍ଯ୍ୟୋଦୟ ଦେଖାହେବ, ଏଇ ଆଶାରେ । ଦୁଃଖ କଟିଯିବ, ଆଲୁଅ ଆସିବ ଏହି ଆଶାରେ । ସୁରେଶ ଭାଇର ତ ମୋତେ ବହୁତ ଗ୍ରହୁଁଥିଲେ । ଥଣ୍ଡା ପବନର ସ୍ପର୍ଶରେ ମୋ ଶରୀର ମଧ୍ୟ ଧୀରେ ଧୀରେ ଥଣ୍ଡା ହେବାକୁ ଆରମ୍ଭ କଲା । ମୁଁ ଟିକିଏ ମନରେ ଶାନ୍ତି ଲାଭକଲି ।

ବଡ଼ କଷ୍ଟରେ ପାଟଣା ସହରରେ ଠିକଣା ଖୋଜି ସୁରେଶଙ୍କ ଘରେ ପହଂଚିଲି ବେଳକୁ ସେ ଅଫିସ ବାହାରୁଥିଲେ । ସେ ମତେ ଦେଖି

ଏଡଗମି ଚମକଗଲେ ସେ ସେ ହେବେ ସେମିତ ସେ ଭୂତ ଦେଖି ଦ୍ରନ୍ତି । ସାଙ୍କ ଚେହେରା ଶେତା ପଡ଼ିଗଲା । ପୁଣି ମୁଁ ହସି କରି କହିଲି - "ଭାଉଜ ସାଙ୍କୁ ଚିହ୍ନିଲ ନାହିଁ ? ମୁଁ ବନ୍ଧୁ ଅ ତମର ଭାଉଜ — ଆଉ ଚିହ୍ନିବ ବା କପରି ? ଦେହ ଖରାପ ଯୋଗୁଁ ମୋ ଶରୀର ମଧ୍ୟ ଦେଖିବାକୁ ଖରାପ ହୋଇ ଯାଇଛି ।"

"ହଉରେ ବୁଢ଼ିକ, ତମେ ଖୁବ୍ ହେରଯାଇଛ, ଆଉ ଚଠି ନାହିଁ, ଖବର ନାହିଁ । ଏପରି ଅଗ୍ରନକ ଏଠି ପହଞ୍ଚିଛ ଯେ ! ଭାଇ କାହାନ୍ତି ।"

"ଚଳ ଭିତରକୁ ଚଳ, ମୁଁ ପୂର୍ବ କାହାଣୀ, ମୋର ଅବସ୍ଥା କଥା ସବୁ ତମକୁ କହିବ ।" କେଜାଣି କାହିଁକି ମୋର ଘରଭିତରକୁ ଯିବାଟା ସେ ଜମା ପସନ୍ଦ କରୁ ନ ଥିଲେ । ମୁଁ ଭିତରକୁ ଯିବାକୁ ଆରମ୍ଭ କରନ୍ତେ ଦେଖିଲି କବାଟ ଆଢୁଆଳରେ ସ୍ତ୍ରୀଲୋକଟିଏ ଠିଆ ହୋଇ ଆମ ଦୁହିଁଙ୍କ କଥା ଶୁଣୁଛି ।

ସେ ହାଙ୍ଗେ ସାଙ୍ଗେ ଆଗକୁ ଆସି କହିଲେ, ଆରେ ହଁ, ଶୁଣୁ ମୋ ଭାଉଜ ଆସିଛନ୍ତି, ଆଜ ଟିକଏ ଖିଆଲ ରଖିବ ଯେପରି ଖାଇବା ପିଇବାରେ କିଛି ଅସୁବିଧା ନ ହୁଏ । ସନ୍ଧ୍ୟାବେଳେ ଆସି ମୁଁ ଅନ୍ୟତ୍ର ରଖାଇବାର ବ୍ୟବସ୍ଥା କରିବ ।

ମୋ ମୁଣ୍ଡ ଘୂରିଗଲା କେବଳ ଆଜ ଦିନଟା ପାଇଁ ଆଉ କାଲିଠୁଁ ମୋର ଅନ୍ୟତ୍ର ବ୍ୟବସ୍ଥା··· । ମୁଁ ପଚାରିବାକୁ ଚାହିଁଥିଲି ଜନ୍ମ ସେ ଅଫିସ ଚାଲିଗଲେ ।

ତାଙ୍କ ସ୍ତ୍ରୀ ମୋର ଗୋଡ଼ଠୁଁ ମୁଣ୍ଡପର୍ଯ୍ୟନ୍ତ ବଲ ବଲ କରି ଚାହିଁଲେ । ପୁଣି ରୁକ୍ଷ ସ୍ୱରରେ କହିଲେ, "ହଉ ଭିତରକୁ ଯାଅ ।"

ଖାଇପିଇ ସାରି ବଛଣାରେ ଲେଟିଗଲି, ପୁଣି ଭାବିଲି ବର୍ତ୍ତମାନ କ'ଣ ହେବ ? ସେ ତ ମୋର ଏଠିକୁ ଆସିବା ପସନ୍ଦ କଲେ ନାହିଁ । ଏବେ ମୁଁ

କ'ଣ କରିବ । କାଲେ ଏମାନେ ଖର୍ଚ୍ଚ କଥା ଚିନ୍ତା କରୁଥିବେ, କାଲେ ମୁଁ ଏମାନଙ୍କଉପରେ ବୋଝ ହୋଇଯିବ ? ମୋତେ ତ କେବଳ ଏକ ନିର୍ଭୟ ଆଶ୍ରୟ ଏବଂ ମୁଣ୍ଡଗୁଞ୍ଜିବାକୁ ସ୍ଥାନଟିଏ ମିଳିଯିବା ଦରକାର ... ।

ସନ୍ଧ୍ୟାବେଳକୁ ଯେତେବେଳେ ସୁରେଶ ଅଫିସ୍‌ରୁ ଫେରିଲେ ମୁଁ ତାଙ୍କୁ କହିଲି "ଭାଇ, ଆଉ ତୁମମାନଙ୍କ ଉପରେ ମୁଁ ବୋଝ ହେବି ନାହିଁ, ମୁଁ ଜାଣିଛି, ଆଜିକାଲି ଏ ମହର୍ଘ୍ୟକାଳରେ କିଏ କାହା ବୋଝ ସମ୍ଭାଳିବାକୁ ରାଜି ନୁହନ୍ତି । ମୁଁ ତମର ଖର୍ଚ୍ଚ ବଢ଼ାଇବି ନାହିଁ । କେଉଁଠି କାମ ଧନ୍ଦାକରି ମୁଁ ମୋର ଖର୍ଚ୍ଚ ଉଠାଇନେବି । କେବଳ ତମ ଘରେ ଗୋଟିଏ କଣରେ ରହିଯିବାପାଇଁ ଯାଗାଟିକିଏ ଦରକାର, ଏତିକି ମୋର ତମ ପାଖରେ ନିବେଦନ ।"

ସୁରେଶ କହିଲେ — "ଭାଉଜ, ତମେ ଟିକିଏ ଭାବ— ମୁଁ ପିଲାପିଲିଙ୍କର ବାପା ହେଲିଣି । ସମାଜରେ ମତେ ରହିବାକୁ ହେବ । ତମକୁ ଯଦି ଘରେ ରହିବାକୁ ଦେବି ତ ବଦନାମ ହୋଇଯିବି, । ପିଲାମାନଙ୍କ ବାହାଘର ମୋତେ କରିବାକୁ ପଡ଼ିବ, ତାଙ୍କ ଭବିଷ୍ୟତ କଥା ଚିନ୍ତା କରିବାକୁ ପଡ଼ିବ । ତାଙ୍କ ଭବିଷ୍ୟତକୁ କାହିଁକି ଆମେ ନଷ୍ଟ କରିବା । ତମର ଫଟୋଗୁଡ଼ିକ ଖବର-କାଗଜରେ ବାହାରି ସାରିଛି— ଯଦି କିଏ ଜାଣିଲା ତମେ ମୋର ଘରେ ରହୁଛ ତାହେଲେ ମୁଁ ବଦନାମ ହୋଇଯିବି । ମୋ ମାନ ସମ୍ମାନ ସବୁ ପଦାରେ ପଡ଼ିଯିବ, ପୁଣି ମୋ ସ୍ତ୍ରୀ କହୁଛି "ତମେ ତମର ରୂପବତୀ ଭାଉଜଙ୍କ ରହିବା ପାଇଁ ଅନ୍ୟ କୋଉଠି ଯାଗା ଦେଖ ! ଏ ଘରେ ହୋଇ ପାରିବ ନାହିଁ ।"

ମୋ ଗୋଡ଼ ତଳୁ ଭୂମି ତଳକୁ ତଳକୁ ଖସିଯିବାପରି ଲାଗିଲା । ମୁଁ କାନ୍ଦି କାନ୍ଦି କହିଲି —"ମୁଁ ବଡ଼ ଆଶା ନେଇ ଆସିଥିଲି କିନ୍ତୁ ବର୍ତ୍ତମାନ

କୁଆଡ଼େ ଯିବ ? ତମ ଘରଙ୍କର ମଧ୍ୟ କିଛି ପତ୍ତା ନାହିଁ । କୁଆଡ଼େ ଗଲେ ଜଣାନାହିଁ .... ମୋର ଆଉ ଏ ଦୁନିଆରେ କେହି ନାହାନ୍ତି ସୁରେଶ ...? ମୁଁ କୁଆଡ଼େ ଯିବ ?

"ଟିକିଏ ଆଶ୍ରୟ ପାଇଁ ଭିକ ମାଗୁଛି ... ଦୟାକର ମୋ ଉପରେ ।"

ସେ କହିଲେ "ସେଥିପାଇଁ ଚିନ୍ତା କରିବାର ନାହିଁ- ମୁଁ ତୁମପାଇଁ 'ନାରୀନିକେତନ' ହଷ୍ଟେଲରେ ତୁମର ରହିବାର ସବୁ ବନ୍ଦୋବସ୍ତ କରୁଛି । ସେଠାରେ ତମେ ଆରାମରେ ଖାଇପିଇ ରହିବ... ସବୁ ମାଗଣାରେ ମିଳିବ । ଖବରକାଗଜ ବାଲା ମଧ୍ୟ ସେଠାରେ ପହଞ୍ଚି ପାରିବେ ନାହିଁ । ତମପରି ଅନ୍ୟ ସ୍ତ୍ରୀ ଲୋକମାନେ ମଧ୍ୟ ସେଠି ଅଛନ୍ତି । ସେଠାରେ ଏସବୁର କିଛି ଆଲୋଚନା ହେବନାହିଁ । ପୁଣି ମଝିରେ ମଝିରେ ମୁଁ ଯାଇ ତମକୁ ଦେଖି ଆସୁଥିବି ।"

ପର ଦିନ ସୁରେଶ ମତେ ଟ୍ରକ୍ସିରେ ନେଇ 'ନାରୀନିକେତ'ରେ ଛାଡ଼ିଦେଇ ଆସିଲେ !

ନିରଳସ ଜୀବନ ଯାପନ କରି ଏହି ନାରୀନିକେତନ ଜେଲ୍‌ଖାନାରେ ମୋର ଜୀବନର କୋଡ଼ିଏଟି ବର୍ଷ ବିତିଗଲା । ଦିନରାତି, ମାସ, ବର୍ଷ ସବୁ କଟିଗଲା । ଦେହ, ମନ ସବୁରେ ଜଡ଼ତା ଆସିଗଲା । ଆଉ ଜୀବନ୍ତ ଆସିଲା ନାହିଁ । ଚିନ୍ତା ଆସିଲା ନାହିଁ - ଅନୁଭବ ଆସିଲା ନାହିଁ, ଶକ୍ତି ମଧ୍ୟ ଆସିଲା ନାହିଁ ।

ଆଉ ଜୀବନର କେତୋଟା ଦିନ ବାକି ରହିଲା ଯେ ! — ମୋରି କୁ କର୍ମର ଫଳ ମୁଁ ଭୋଗକରୁଛି ... ଏ ନର୍କର ଯନ୍ତ୍ରଣାରୁ ମତେ କେବେ ମୁକ୍ତି ମିଳିବ ମୁଁ ସେଇ ଚିନ୍ତାରେ ଅଛି... କିନ୍ତୁ ଯଦି ଶେଷକୁ ମୃତ୍ୟୁ ମଧ୍ୟ ମତେ ଗ୍ରହଣ ନ କରେ ତେବେ ମୋର କ'ଣ ହେବ...?

# ଆଶାର କିରଣ

ରାତିର ଘନ ଅନ୍ଧକାରକୁ ଚିରି ପଞ୍ଜାବ ମେଲ୍ ଖୁବ୍ ଜୋର୍‌ରେ ଦଉଡ଼ୁଥିଲା । ଫେବୃୟାରୀ ମାସ । ପବନରେ ଥଣ୍ଡା ଏ ପର୍ଯ୍ୟନ୍ତ ଲାଗିରହି-ଥିଲା । ଗଛ ସବୁ ଭୂତପରି ଆମ ଟ୍ରେନ୍ ସାଙ୍ଗରେ ଦଉଡ଼ୁଥିଲେ । କିନ୍ତୁ ଥକି ପଡ଼ି ପୁଣି ପଛରେ ପଡ଼ିଯାଉଥିଲେ ।

ମୁଁ ଶାନ୍ତିରେ ନିଶ୍ୱାସ ମାରିଲି । ଏହି ଦ୍ୱିତୀୟ ଶ୍ରେଣୀ ମହିଳା ଡବାରେ ଏପର୍ଯ୍ୟନ୍ତ ପାଟି ତୁଣ୍ଡ ଲାଗି ରହିଥିଲା । ପିଲାମାନେ କାନ୍ଦୁଥିଲେ । ସ୍ତ୍ରୀଲୋକଙ୍କ ଭିତରେ ଝଗଡ଼ା ଲାଗି ରହିଥିଲା । ହାଓଡ଼ା ଷ୍ଟେସନ୍ ଛାଡ଼ିବାର ଦୁଇଘଣ୍ଟା ହୋଇ ଯାଇଥିଲା । ଯିଏ ଯାହାର ଜାଗା ଉପରେ ବସିଯାଇଥିଲେ । ବର୍ତ୍ତମାନ ଡବା ଭିତରେ ଶାନ୍ତି ଆସିଯାଇଥିଲା । ପିଲାମାନେ କାନ୍ଦି କାନ୍ଦି ଥକି ଶୋଇ ଯାଇଥିଲେ । ବର୍ଦ୍ଧମାନ ଷ୍ଟେସନ୍ ଆସିଲା । କିଏ କିଏ ସବୁ ଚାହା ପିଇଲେ, କିଏ କିଏ ନଡ଼ୁଦାନା କିଣିଲେ ଅଉ ଅନ୍ୟମାନେ ନିଜ ନିଜର ଡବା ଖୋଲି ଖାନା ଖାଇବା ଆରମ୍ଭ କରିଦେଲେ ।

ସମସ୍ତଙ୍କୁ ଖାଇବା ଦେଖିକରି ମୋତେ ମଧ୍ୟ ଭୋକ ଲାଗିଲା । ମୁଁ ମଧ୍ୟ ମୋର ଟିଫିନ୍ କ୍ୟାରିଅର ଖୋଲିଥିଲି । କିନ୍ତୁ ସେତିକିବେଳେ ମୋ ନଜର ପଡ଼ିଲା ମୋ ସିଟ୍‌ର ଗୋଟିଏ କୋଣରେ ଚୁପ୍ ଚାପ୍ ହୋଇ ବସି ରହିଥିବା ସୁନ୍ଦରୀ ସ୍ତ୍ରୀ ଲୋକଟି ଉପରେ, ଯିଏ ଗୋଟିଏ ପିଲାକୁ କୋଳରେ ଧରି

•

•

ଅନେକ ବେଳୁ ଚୁପ୍‌ଚାପ୍ ବସି ରହିଥିଲି । ହାଓ୍ୱାଡ଼ା ଷ୍ଟେସନରୁ ସେ ଆମ ସାଥିରେ ଟ୍ରେନରେ ଚଢ଼ିଥିଲି କିନ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ ସେ ନା ଗୁହାବାଲାକୁ ଡାକିଥିଲି ନା କିଛି ଖାଇଥିଲି । ତା ମୁହଁରୁ ଏପର୍ଯ୍ୟନ୍ତ ଶବ୍ଦଟିଏ ମଧ୍ୟ ବାହାରି ନ ଥିଲା । ତାର ସୁନ୍ଦର ଚେହେରା, ମଇଳା ଲୁଗା ଓ ନାଲି ନାଲି ଆଖିରୁ ଜଣା ପଡ଼ୁଥିଲା ସତେ ଯେପରି ଚନ୍ଦ୍ରରେ ଗ୍ରହଣ ଲାଗିଛି । ମୁଁ ଭାବିଲି ବଚ୍ଚାଟା ଉପରେ କ କଷ୍ଟ ନ ପଡ଼ୁଥିବ । ନିଶ୍ଚେ କୌଣସି ନିକଟ ସମ୍ପର୍କୀୟଙ୍କ ମୃତ୍ୟୁରେ ସେ ତାଙ୍କ ଘରକୁ ଯାଉଛି । ସେଥିପାଇଁ ସେ ଏତେ ଦୁଃଖିତା ଜଣାପଡ଼ୁଛି ।

ମୁଁ ଶୋଇବାର ବନ୍ଦୋବସ୍ତ କରୁଥିଲି । ଏହି ସମୟରେ ତା' ପିଲାଟି କାନ୍ଦିବା ଆରମ୍ଭ କରିଦେଲା । ସେ ପ୍ରଥମେ ତାକୁ କୋଳରେ ଥାପୁଡ଼ାଇ ଶୁଆଇବାକୁ ଚେଷ୍ଟାକଲା କିନ୍ତୁ ପିଲାଟି ଯେତେବେଳେ ନ ଶୋଇଲା ସେତେବେଳେ ସେ ଲୁଲୁପଡ଼ି ନିଜ ସ୍ତନ ପିଲାଟିର ମୁହଁରେ ଦେଲା । ପିଲାଟି ଥରେ ଦୁଇଥର ଚେଷ୍ଟାକଲା କିନ୍ତୁ ଯେତେବେଳେ ପେଟକୁ କିଛି ଗଲାନାହିଁ ପୁଣି ସେ କାନ୍ଦିବାକୁ ଆରମ୍ଭ କରିଦେଲା । ସାମନା ସିଟ୍‌ରେ ଶୋଇଥିବା ବଙ୍ଗାଳୀ ଭଦ୍ରମହିଳା ଜଣକ ଖୁବ୍ ବିରକ୍ତ ହୋଇ କହିଲେ "ଆରେ, ନିଜ ପିଲାଟିକୁ ଚମ୍ଭାଳି ପାରୁନ ? ଆମର ନିଦ ଭାଙ୍ଗୁଛି ଏବଂ ତା ସଙ୍ଗେ ସଙ୍ଗେ ଆମ ପିଲାମାନଙ୍କର ମଧ୍ୟ ।"

ତା'ର ଏ ଅବସ୍ଥା ଦେଖି ମୁଁ କହିଲି –"ଆଣ, ଭଉଣୀ ପିଲାଟିକୁ ମତେ ଦିଅ ମୁଁ ଚୁପ୍ କରିଦେଉଛି ।" ମୁଁ ତ ପୁଣି ଛଅ ଛଅଟା ପିଲାଙ୍କୁ ପାଳିଛି । ମୁଁ ପିଲାକୁ କୋଳକୁ ନେଲି । କିନ୍ତୁ ତା' ଦେହରେ ହାତ ଦେଲାମାତ୍ରେ ମୁଁ ଚମକି ଉଠିଲି ।

"ଆରେ ଏହାକୁ ତ ଜ୍ୱର ହେଉଛି, ଅମେ ଏହାକୁ କୌଣସି ଗରମ ପୋଷାକ ପିନ୍ଧାଇନ, ଆଗ କିଛି ଗରମ କପଡ଼ା ଆଣ ଘୋଡ଼େଇ ଦେବା ।

ବାହାରେ ବହୁତ ଥଣ୍ଡା ।" ସେ କିନ୍ତୁ ଖୁବ୍ ନିର୍ଘଣାର ସହ ମୋ ମୁହଁକୁ ଅନାଇଲା ଏବଂ ନିଜ ଶାଢ଼ୀର ପଣତରେ ପିଲାକୁ ଘୋଡ଼େଇ ପକାଇଲା । ମୁଁ ନିଜ ଶାଲ ତା ଆଡ଼କୁ ବଢ଼ାଇ ଦେଲି ଏବଂ ନିଜ ବାକ୍ସରୁ ବିସ୍କୁଟ ଆଣି ପିଲାଟାକୁ ଦେଲି । ତାକୁ ଗରମ ଲାଗିଲା ଆଉ କିଛି ଖାଦ୍ୟ ଖାଇ ପିଲାଟା ଶୋଇପଡ଼ିଲା । ମୁଁ ତାକୁ ଧୀର କଣ୍ଠରେ ପଚାରିଲି — 'ତମର କଣ ନିହାତି କିଛି ଅସୁବିଧା ହୋଇଛି କି ? ତମ ସ୍ୱାମୀଙ୍କର କିଛି ଅସୁବିଧା ହୋଇଛି କି ? ତମେ ଏପରି ଉଦାସ କାହିଁକି ।"

ମୋଠୁଁ ଏତିକି ସହାନୁଭୂତି ଶବ୍ଦ ଶୁଣି ତାର ଧୈର୍ଯ୍ୟର ବାନ୍ଧ-ବନ୍ଧ ଭୁସୁଡ଼ି ପଡ଼ିଲା ଏବଂ ସେ କାନ୍ଦିବାକୁ ଆରମ୍ଭ କଲା । ପାଞ୍ଚ ମିନିଟ ପର୍ଯ୍ୟନ୍ତ ସେ ଏମିତି କାନ୍ଦିବାରେ ଲାଗିଲା ଓ ମୁଁ ତା ପିଠି ଉପରେ ହାତ ରଖି ତାକୁ ବୁଝାଇବାରେ ଲାଗିଲି । ସେ କାନ୍ଦି କାନ୍ଦି କହିଲା- ' ତାଙ୍କରି ପାଇଁ ତ ମୋର ଆଜି ଏ ଦଶା । ସେ ନିଜ ମା'ର ଗୋଲାମ । ମା'ର କଥାରେ ସେ ଉଠ୍‌ବସ୍ ହୁଅନ୍ତି । ଏତେ ବଡ଼ ଡାକ୍ତର, ବିଦେଶରୁ ପାଠପଢ଼ି ଆସିଛନ୍ତି । କିନ୍ତୁ ମା ତାଙ୍କର ଏମିତି କମିଯ଼ା କରିଛନ୍ତି ଯେ ସେ ପୁରାପୁରି ମାଙ୍କ କଥାରେ ନାଚୁଛନ୍ତି । ଯେତେବେଳେ ମାଆ ଆମ ପାଖରେ ନ ରୁହନ୍ତି ସେତେବେଳେ ଆମ ଜୀବନ ଠିକ୍ ଭାବରେ ଚାଲେ ।

ମୋ ଶ୍ୱଶୁର ଦିଲ୍ଲୀରେ ରହନ୍ତି । ସେ ଜଣେ ଉଚ୍ଚପଦସ୍ଥ ସରକାରୀ ଅଫିସର ଏବଂ ଖୁବ୍ ଭଲ ଲୋକ । ଆଉ ଦୁଇ ନଣନ୍ଦ ଦିଲ୍ଲୀରେ ପଢ଼ୁଛନ୍ତି । ଜଣେ ବି. ଏ ଫାଇନାଲରେ ଆଉ ଜଣେ ପାଠସାରି ବାହା ହେବା ପାଇଁ ଅପେକ୍ଷା କରୁଛି । ଦୁଇଜଣଯାକ ମାଆଙ୍କପରି ଖୁବ୍ କଳି ଝଗଡ଼ା କରନ୍ତି । ସେମାନଙ୍କୁ ସବୁ ଛାଡ଼ି ମାଆ ଆମପାଖରେ କଲିକତା ଚାଲିଆସିଲେ ଏବଂ ଏକମାତ୍ର ପୁଅଟି ! ଏବେ ଫେରିବାର ନାଁ ମଧ୍ୟ ଧରୁ-ନାହାନ୍ତି । ଆମ ଦୁହିଁଙ୍କର ଜୀବନରେ ବିଷ ଢାଳି ଦେଇଛନ୍ତି । ସକାଳୁ ସନ୍ଧ୍ୟାପର୍ଯ୍ୟନ୍ତ ତାଙ୍କଠୁଁ ଖାଲି ଗାଳି ଆଉ ଅଡ଼ା ଶୁଣିବାରେ ମୋର ଦିନ

କଟିଯାଉଛି । ମନେ ହେଉଛି ସତେ ଯେମିତ ଗାଳି ଦେବାପାଇଁ, ସେ ଯେମିତ ଗାଳିର କୌଣସି ଏକ ପାଠ୍ୟକ୍ରମ ଶେଷ କରି ଆସିଛନ୍ତି ଏବଂ ବର୍ତ୍ତମାନ ଏ ଗାଳି ଉପରେ ରିସର୍ଚ୍ଚ କରୁଛନ୍ତି । ମୋର ପୂରା ବିଶ୍ୱାସ ତାଙ୍କୁ ଏ 'ଗାଳି' ଉପରେ ଡକ୍ଟରେଟ୍ ମଧ୍ୟ ମିଳିଯିବ ।

ଆମର ପରିବାର ଖୁବ୍ ଛୋଟ ଥିଲା । ଭାଗଲପୁରରେ ଆମର ଗୋଟିଏ ଘରଟିଏ । ଆଉ ଅନ୍ୟ ଦାଦାମାନଙ୍କ ସାଙ୍ଗରେ ବ୍ୟବସାୟ ମଧ୍ୟ ଭଲ ଥିଲା । ମୁଁ ବାପାଙ୍କର ଏକମାତ୍ର ଗେହ୍ଲା ଝିଅ ଥିଲି ଏବଂ ବାପା ମୋତେ ସବୁବେଳେ କହୁଥିଲେ— "ମୋ ଝିଅପାଇଁ ମୁଁ ସରଗର ଚାନ୍ଦ ଆଣିଦେବି । ଝିଅ ମୋର ଖୁସିରେ ରହିବ ।" ମୁଁ ଏମ୍. ଏ. ମଧ୍ୟ ପାଶ କରିଗଲି । କିନ୍ତୁ ବାପା ଆମ ସୁଖ ଦେଖିବା ଆଗରୁ ଆରପାରିକୁ ଚାଲିଗଲେ ।

"ବାପାଙ୍କ ମୃତ୍ୟୁପରେ ଆମ ଉପରେ ଦୁଃଖର ପାହାଡ଼ ଲଦି ହୋଇଗଲା । ଦାଦାମାନେ ବ୍ୟବସାୟରେ ମଧ୍ୟ ଆମକୁ ଠକିବାରେ ଲାଗିଲେ । କେବଳ ଆମ ପାଖରେ ଏକମାତ୍ର କୋଠାଟା ରହିଗଲା । ଏହି କୋଠାର ଅଧେ ଭାଗ ଆମେ ଭଡ଼ାରେ ଦେଇ ନିଜର ପରିବାର ଚଳାଇଲୁଁ । ସମୟର ଗତି ସଙ୍ଗେ ସଙ୍ଗେ ଆମେ ନିଜକୁ ଧୈର୍ଯ୍ୟର ସହିତ ଚଳାଇବାରେ ଲାଗିଲୁଁ ।

"ମୋ ବାପାଙ୍କ ଆଶାକୁ ପୂରଣ କରିବାପାଇଁ ମୁଁ ମୋ ନିଜପାଇଁ ବର ଖୋଜିବାରେ ଲାଗିଗଲି, ଆଉ ମିଳିଗଲା ମଧ୍ୟ । ବିଦେଶରୁ ପାଠପଢ଼ି ଫେରିଥିବା ଡଃ ସଞ୍ଜୟ ଜୈନ— ଖୁବ୍ ସୁପୁରୁଷ । କଥାବାର୍ତ୍ତା ଠିକ୍ ହୋଇଗଲା । ସେମାନେ ଅଧିକ ଯୌତୁକ ଦାବୀ କରୁଥିଲେ । ଝିଅର ଖୁସିପାଇଁ ମୋ ମା' ନିଜର କୋଠାଟିକୁ ବିକିଦେଇ ଖୁବ୍ ଧୁମ୍ ଧାମରେ ମୋ ବାହାଘର ସାରିଦେଲେ ଓ ନିଜ ଲକ୍ଷ୍ନୌରେ ନିଜ ବାପା ମାଆଙ୍କ ପାଖରେ ରହିବାପାଇଁ ଚାଲିଗଲେ ।

ମୁଁ ଯେତେବେଳେ ସ୍ୱାଙ୍କ ଘରକୁ ବୋହୂ ହୋଇ ଆସେ ସେତେ-ବେଳେ ଏ ଘରର କାରବାର ମୋତେ ଜଣାପଡ଼ିଲି । କିନ୍ତୁ ସେତେବେଳକୁ ବହୁତ ଡେରି ହୋଇଯାଇଥିଲି । ମୁଁ ମଧ୍ୟ ଖୁବ୍ ସହିଲି । କିନ୍ତୁ ତାଙ୍କୁ କଷ୍ଟ ଦେବାପାଇଁ ଗୃହିଲି ନାହିଁ । ତାଙ୍କୁ ମଧ୍ୟ ମୁହଁ ଖୋଲି ଜବାବ ଦେବାକୁ ସାହାସ କଲି ନାହିଁ ।"

× × ×

'ମୋର ବୟସ ଖୁବ୍ କମ୍ ଥିଲା ଏବଂ ଭଗବାନଙ୍କ ଦୟାରୁ ମୋର ରୂପ ମଧ୍ୟ ଖୁବ୍ ସୁନ୍ଦର ଥିଲା । ଏ ବୟସରେ ମୁଁ ନିଜକୁ ସଜାଇବାକୁ ଖୁବ୍ ଭଲ ପାଉଥିଲି । ଘଣ୍ଟା ଘଣ୍ଟା ଧରି ଦର୍ପଣ ସାମ୍ନାରେ ମୁଁ ଛିଡ଼ା-ହୋଇ ନିଜକୁ ସଜାଉଥିଲି । ବିଭିନ୍ନ ରଙ୍ଗର ଶାଢ଼ୀ ଅଳଙ୍କାର ପିନ୍ଧିବାକୁ ମତେ ଭଲ ଲାଗୁଥିଲା । ମୁଁ ନୂଆ ଜୀବନର ସ୍ୱାଦ ଗୃଖିବାକୁ ଆରମ୍ଭ କରିଥିଲି ।

"ଶ୍ୱଶୁର ଘରକୁ ଆସିଲାମାତ୍ରେ ସବୁ ଜିନିଷପତ୍ର ଆଉ ଗ୍ରହ ଶାଶୂ ସମ୍ଭାଳିଲେ ! କୁଆଡ଼େ ଯିବା ଆସିବାକୁ ବାହାରିଲେ ଶାଶୂ ମତେ ବାକ୍ସରୁ ଗହଣା ଶାଢ଼ୀ ଇତ୍ୟାଦି କାଢ଼ି ପିନ୍ଧିବାକୁ ଦେଉଥିଲେ ଏବଂ ଫେରିଆସିଲେ, ପୁଣି ସେ ସବୁ ମୋଠୁଁ ନେଇ ବାକ୍ସରେ ରଖି ଦେଉଥିଲେ ।

କିଛି ଦିନ ପରେ ଆମକୁ କଲିକତା ଯିବାକୁ ପଡ଼ିଲା । କାରଣ ସେ ଆଉ ଗୋଟେ ନୂଆ କମ୍ପାନୀରେ ମେଡ଼ିକାଲ୍ ଅଫିସର ହିସାବରେ ନିଯୁକ୍ତି ପାଇଥିଲେ । ମୁଁ ଯିବା ପୂର୍ବରୁ ମାଙ୍କୁ (ଶାଶୂ) କହିଲି – "ମାଆ, ମୋ ଜିନିଷ ସବୁ ମୋତେ ଦିଅନ୍ତୁ, କଲିକତାରେ ସେସବୁ ଦରକାର ହେବ ।"

ସେ ରାଗିଯାଇ କହିଲେ—"କି ଜିନିଷ ? ଲାଜ ଲାଗୁନି ତୋତେ । କାଲି ତୁ ଏଘରେ ପାଦ ଦେଇଛୁ, ଆଜିଠୁଁ କହିଲୁଣି ତୋ ଜିନିଷ ? ଏ ଘରେ ତୁ କ'ଣ ଭିତ ବସାଇଛୁ ନାଁ କ'ଣ ?"

ମୁଁ ସେଠାରୁ କିଛି ବୁଝି ପାରିଲି ନାହିଁ । ମୁଁ ପୁଣି ଥରେ ଅନୁରୋଧ କଲି "ମାଆ ! ଆପଣ ଯାହା ଦେଇଛନ୍ତି ସେ ସବୁକୁ ରଖି ଦିଅନ୍ତୁ । କିନ୍ତୁ ଆମଘରୁ ଯାହା ଜିନିଷ ସବୁ ଆସିଥିଲା ସେତକ ମୋତେ ଦିଅନ୍ତୁ କାରଣ କଲିକତାରେ ଆମକୁ ନୂଆକରି ସବୁ କରିବାକୁ ହେବ, ସେତେବେଳେ ଏ ସବୁ ଜିନିଷ ଦରକାର ହେବ ।

ଏତିକି ଶୁଣିଲା ମାତ୍ରେ ସେ ଉଗ୍ରଚଣ୍ଡୀ ରୂପ ଧାରଣ କରି ଗର୍ଜି ଉଠିଲେ—"କାଲିକା ଟୋକି, ତୋର ଏତେ ସାହାସ, ମୋ ମୁହଁ ଉପରେ ପୁଣି ଜବାବ ? କି ଜିନିଷ ତୁ ଦେଖାଉଛୁ ! ଏ ଘରେ ତୋର ଯେଉଁ ଦୁଇଜଣ ନଣନ୍ଦ ବସିଛନ୍ତି ତାଙ୍କର ଦାୟିତ୍ୱ ମଧ୍ୟ ତୋର । ତୁ ଯଦି ସବୁ ଜିନିଷ ନେଇଯିବୁ ତେବେ ବାହାଘର ବେଳେ ମୁଁ ତାଙ୍କୁ କ'ଣ ଦେବି ?"

ହାୟ ଘର କମ୍ପିଲା । ମୁଁ ଡରିଗଲି । ଲାଜରେ ସଢ଼ିଗଲି । ଘରେ ସବୁ ମତେ କ'ଣ ବୋଲି ଭାବୁଥିବେ ! ଭାବୁଥିବେ ମୁଁ ଏ ଘରେ କଳି କରିବାପାଇଁ ଆସିଛି । କଲିକତା ଯିବା ସମୟରେ ମୁଁ ଖାଲି ପୁରୁଣା ଶାଢ଼ୀ କେଇଖଣ୍ଡ ଏବଂ ଅଳ୍ପ କିଛି ବାସନକୁସନ ନେବାପାଇଁ ଅନୁମତି ପାଇଲି କେବଳ ସେତିକି ନୁହେଁ, ନୂଆଘର ବସାଇବାପାଇଁ ମାଆ ମଧ୍ୟ ଆମ ସାଙ୍ଗରେ କଲିକତା ଆସିଲେ ।

ମୁଁ ବଡ଼ ମନ ଦୁଃଖରେ ମୋ ମାଆଙ୍କ ଦିଆହୋଇଥିବା ଜିନିଷ-ପତ୍ର କଥାକୁ ମନେ ପକାଇ କଲିକତା ଆସିଲି । ଭାବିଥିଲି ଛୋଟିଆ ଘରଟାକୁ ମୋର ଇଚ୍ଛା ଅନୁସାରେ ସଜାଇବି । ବଢ଼ିଆ ବଢ଼ିଆ ଖାଇବାକୁ ରାନ୍ଧିବି ଆଉ ତାଙ୍କ ପ୍ରେମରେ ବନ୍ଦୀ ହୋଇ ସବୁ କିଛି ଭୁଲିଯିବି ।

ମା ଆମ ସାଙ୍ଗରେ ଦୁଇମାସ କଲିକତାରେ ରହିଲେ । ଆମକୁ ସବୁଦିନ କମ୍ ଖର୍ଚ୍ଚରେ କେମିତି ଘର ଚଳାଇବାକୁ ପଡ଼ିବ ସେଇ କଥାହିଁ

ଶିଖାନ୍ତି । କୁହନ୍ତି - "ଚାକର ପୂଜାରୀ ରଖିବ ନାହିଁ । ସବୁ ଘରେ କରି ଖାଇଯିବେ । ଖାଇବାରେ ବେଶି ତେଲ ମସଲା ପକାଇବ ନାହିଁ । ଦେହ ଖରାପ ହୋଇଯିବ । ବେଶି ଇଆଡ଼େ ସିଆଡେ ବୁଲାବୁଲି କରିବ ନାହିଁ । ପଇସା ଖର୍ଚ୍ଚ ହୋଇଯିବ ।"

ଯେଉଁଦିନ ମା ବିଦାହେଲେ, ସେତେବେଳେ ସ୍ୱାମୀଙ୍କୁ କହିଗଲେ "ପୁଅ, ତମେ ମାତ୍ର ଦୁଇଜଣ ଅଛ, ପାଞ୍ଚଶହ ଟଙ୍କାରୁ ବେଶୀ ଖର୍ଚ୍ଚ କରିବ ନାହିଁ । ହଜାରେ ଟଙ୍କା ଦିଲ୍ଲୀ ମୋ ପାଖକୁ ପଠାଇଦେବୁ, ନୂଆ ଘର ତିଆରିରେ ଅନେକ ପଇସା ଲାଗିବ । ପୁଣି ତୋ ଭଉଣୀମାନଙ୍କ ବାହାଘର ତ କରିବାକୁ ପଡ଼ିବ ।"

ଛ'ମାସ ପରେ ତାଙ୍କର ଚାକିରି ସ୍ଥାୟୀ ହୋଇଗଲା । କମ୍ପାନୀରୁ ଆମ ଘରପାଇଁ ସବୁ ଫର୍ଣ୍ଣିଚର ଆସିଲା । ଆଉ ଅନ୍ୟାନ୍ୟ ସବୁ ସୁବିଧା ମଧ୍ୟ ମିଳିଲା । ଦରମା ମଧ୍ୟ ବଢ଼ିଗଲା । ଆମେ ଦୁହେଁ ଆସ୍ତେ ଆସ୍ତେ ନୂଆ ନୂଆ ଜିନିଷ ସବୁ କିଣି ଘରକୁ ନୂଆ ରୂପ ଦେବାରେ ଲାଗିପଡ଼ିଲୁ । ଅନ୍ଧକାର ମଧ୍ୟରେ ମୁଁ ନୂଆ ଆଶା ଆଲୋକର କିରଣ ଦେଖିଲି ।

କିଛି ଦିନ ପରେ ମୋର ଦେହ ଭଲ ରହିଲା ନାହିଁ । ଖାଇବା ପିଇବାରେ ମନ ଲାଗିଲା ନାହିଁ । ମୁଁ ସ୍ୱାମୀଙ୍କୁ କହିଲି "ମୋ ଦେହଟା ଭଲ ନାହିଁ । ଯାଏଁ କିଛି ଦିନ ଆମ ଘରଆଡ଼େ ମାଙ୍କ ପାଖରେ ରହିଆସେଁ, ଦେହଟା ଭଲ ଲାଗିବ ଆଉ ମନରେ ମଧ୍ୟ ପରିବର୍ତ୍ତନ ହେବ ।" ସେ ମାଆ (ମୋ ଶାଶୂ)ଙ୍କୁ ଦିଲ୍ଲୀ ଚିଠି ଲେଖିଲେ ଅନୁମତିପାଇଁ । ଚିଠିର ଉତ୍ତରରେ ସେ ନିଜେ କଲିକତାରେ ପହଂଚିଗଲେ । ମୁଁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ସେ ଆସୁ ଆସୁ ଆମ ପର୍ଦ୍ଦା, ଫର୍ଣ୍ଣିଚର ଦେଖି ରାଗରେ ଜଳିଗଲେ । କହିଲେ "ଏଠି ଘର ସଜ୍ଜା ଚାଲିଛି, ଆଉ ସେଠି ଘର ତିଆରି ଅଧା ହୋଇ ପଡ଼ିଛି । ହିସାବ୍ ଦେଖି ଖର୍ଚ୍ଚ କର, ନବାବ ହେଲେ ଚଳିବ ନାହିଁ । ଏସବୁ ଜିନିଷ

ଆମ ନୂଆଘର ବର୍ଦ୍ଧ୍ୟାଙ୍କୁ ନଆସିବ— ହେଠି କିଛୁ ନାହିଁ । ସବୁ ଖୋଲିଦେଇ ପ୍ୟାକ୍ କରିଦିଅ । ସେତେବେଳେ ସେ ରହିଲେ ସବୁ ଜିନିଷ ବନ୍ଧାବନ୍ଧ ଆରମ୍ଭ କରିଦେଲେ ।

ଯେତେବେଳେ ତୁମୋର ଆମ ଘରକୁ ଯିବାର ପ୍ରଶ୍ନ ଉଠିଲା, ସେତେବେଳେ ଶାଶୂ ମୋର ରାଜି ହୋଇଗଲେ । କାରଣ ଏଠି ସ୍ୱାଙ୍କର କମ୍ ଖର୍ଚ୍ଚ ହେବ ଏବଂ ଡେଲିଭରିର ଖର୍ଚ୍ଚ ମଧ୍ୟ ଆମ ଘର ଲୋକ ତୁଲାଇବେ । ଟ୍ରେ ଦିଲ୍ଲୀ ଆସିବା ସମୟରେ ମୋତେ ଲକ୍ଷ୍ନୌରେ ଛାଡ଼ିଦେଇଗଲେ ।

ମୋର ମନର ଅବସ୍ଥା ଦେଖି ମା ମୋତେ କିଛୁ କହିଲେ ନାହିଁ । ମୋ ଶାଢ଼ୀ ଅଳଙ୍କାର ବିଷୟରେ ଯେତେ ପଚାରିଲେ, ମୁଁ ମା'ଙ୍କୁ କୁଣ୍ଢେଇ ବଙ୍କେଇ କହିଲି— "ମୋର ଦେହ ଭଲ ରହୁନ ମା, ତେଣୁ ମୁଁ ଅଳଙ୍କାର ଶାଢ଼ୀ ପିନ୍ଧିବା ଛାଡ଼ି ଦେଇଛି । ମୋ ଚେହେରା ମଧ୍ୟ ଖରାପ ହୋଇଯାଇଛି କିନ୍ତୁ ମୋର ଅନ୍ୟ କିଛୁ ଦୁଃଖ ନାହିଁ ।"

ଲକ୍ଷ୍ନୌରେ କେତେ ମାସ ମୁଁ ମୋର ଭାଇ ଭଉଣୀଙ୍କ ଆଦର ପାଇ ଆରାମରେ ରହିଲି । ମୋର ସୁନ୍ଦର ପୁଅଟିଏ ହେଲା । ତା ନାଁ ଦିଆହେଲା ସୋନଲ୍ । ତାର ଚନ୍ଦ୍ରପରି ମୁହଁ, ଘନ କେଶରାଶି, ଲାଲ ଲାଲ ଓଠ ଦେଖି ମୁଁ ମୋର ସବୁ ଦୁଃଖ ଭୁଲିଗଲି । ଶ୍ୱଶୁର ଘରୁ ଖବର ଆସିଲା । ଶ୍ରେଷ୍ଠଭାଇ ମତେ ଛାଡ଼ିବା ପାଇଁ କଲିକତା ଆସିଲା । ଦିଲ୍ଲୀ ମୁଁ ଜାଣିକରି ଗଲି ନାହିଁ କାରଣ ପୁଣି ମୁଁ ମୋ ପୁଅପାଇଁ ନେଇଥିବା ନୂଆ ଜିନିଷ ସବୁକୁ ଆମ ଶାଶୂ ତାଙ୍କ ଘରେ ରଖି ନେବେ । ଆଉ ନଣନ୍ଦମାନଙ୍କ ପିଲାମାନେ ସେଇଥିରେ ହିଁ ଖେଳିବେ । କିନ୍ତୁ ମୋ ଶାଶୂ ଯେମିତି ଶୁଣିଲେ ମୁଁ କଲିକତା ସୋନଲ୍‌କୁ ନେଇ ଫେରିଆସିଛି ସେ ପୁଣି କଲିକତା ଚାଲିଆସିଲେ । ସୋନଲ୍‌କୁ ଦେଖିବାପାଇଁ ଆଉ ତାକୁ ମିଳିଥିବା ନୂଆ ନୂଆ ଜିନିଷ ସବୁକୁ ଦେଖିବାପାଇଁ ।

ମୁଁ ଲୁଚ୍ଚାଇ ରଖିଥିବା ଦାମୀ ଜିନିଷକୁ ବାହାରୋଇ ଶାଶୁଙ୍କୁ ଦେଖାଇବାକୁ ପଡ଼ିଲା । ସେ କହିଲେ ଏ ଶ୍ରେଷ୍ଠ ଶ୍ରେଷ୍ଠ ଗହଣା, ଘରୁ ଆଲମାରୀ ବାହାର କରିବୁ ନା । ଚୋରି ହୋଇଯିବ । ଆଉ ଅଳ୍ପ ଅଳ୍ପ ଜାମା ପିନ୍ଧିବାପାଇଁ ଦେବୁ । ବାକି ସବୁ ଦେବା ନେବାରେ କାମରେ ଆସିବ । ମୁଁ ସଙ୍ଗେ ସଙ୍ଗେ କହିପକାଇଲି ଆପଣ ମୋର ସବୁ ଜିନିଷ ନେଇଗଲେ ମୁଁ ଚୁପ୍ ରହିଲି । ବର୍ତ୍ତମାନ ମୁଁ ଆପଣଙ୍କୁ ଯୋଉଁଠାରୁ ଆଉ କୌଣସି ଜିନିଷ ଛୁଇଁବାପାଇଁ ଦେବି ନାହିଁ । ତାକୁ ସବୁ ପିନ୍ଧାଇବି, ଖେଳା-ଇବି ଆଉ ଖୁବ୍ ବଡ଼ ମଣିଷ କରିବି ।"

ମୋଠୁଁ ଏତକ ଶୁଣି ମା ଙ୍କର ମୁଣ୍ଡ ଏକଦମ୍ ଗରମ ହୋଇଗଲା । ସେ ଘରେ ଖୁବ୍ ପାଟି ତୁଣ୍ଡ କଲେ ଆଉ ସେଦିନ ନଖାଇ ନପିଇ ଶୋଇ-ଗଲେ ।

ପୁଅ ଏବେ ତିନି ବର୍ଷ ମାସର ହୋଇ ଯାଇଥିଲା । ମୁଁ ତାଙ୍କୁ ବିନୟରେ ସବୁ କହିଲି— "ଏବେ ଆମେ ତିନିଜଣ ହୋଇଗଲୁଣି । ପୁଅକୁ ବେବିଫୁଡ୍ ଇତ୍ୟାଦି ମଧ୍ୟ କିଣି ଆଣିବାକୁ ପଡ଼ିବ । ଏଥିପାଇଁ ଆମପାଖରେ କିଛି ଅଧିକ ପଇସା ରଖିବାକୁ ପଡ଼ିବ । ଜିନିଷ ପତ୍ରର ଦରଦାମ୍ ତ ବୃଦ୍ଧି ପାଇବାରେ ଲାଗିଛି ।"

ସେ ତାଙ୍କ ନାକ ଉପରେ ରାଗ ଚଢ଼ାଇ କହିଲେ— "ସ୍ୱେ କ'ଣ କୁଆଡ଼ୁ ସ୍ୱର୍ଗରୁ ଆସିଲା ! ତମେ ସବୁ କ'ଣ 'ବେବିଫୁଡ୍' ଖାଇଥିଲ ? ତମେ ପୁଣି କେମିତି ଏତେ ବଡ଼ ହୋଇଗଲ ? ମୁଁ ତ କାହିଁ ମୋ ପୁଅପାଇଁ ଏତେ ସବୁ କରିନଥିଲି । କାନ ଖୋଲିକରି ଶୁଣ, ଆମ ଘରେ ଏସବୁ ଫିସାଦ ବରଦାସ୍ତ ହୋଇ ପାରିବନି ।"

ମୁଁ ପୁଣି ବିନତି କଲି "ମୁଁ ଏମ୍ ଏ ପାଶ୍ କରିଛି, ଯଦି ଆପଣ କହିବେ ତ ମୁଁ ଚାକିରୀ କରିବି ତା ହେଲେ ଏସବୁ ଖର୍ଚ୍ଚ ହୋଇ ପାରିବ ।"

ସେ ଗାଳି କରି ଉଠିଲେ "କଣ କହିଲୁ, ଘରର ବୋହୂ ହୋଇ ଚାକିରି କରିବାକୁ ବାହାରକୁ ଯିବୁ ? ଘରର ମାନ ମହତ ସବୁ ପଦାରେ ପକାଇବୁ । ଖବରଦାର, ଆଉ ଚାକିରି କଥା କହୁଛ ! ମତେ ଏସବୁ ସ୍ୱାଧୀନ କାରବାର ଜମାରୁ ପସନ୍ଦ ନୁହେଁ, କହିଦେଉଛି ।"

× × ×

ସୋନାଲ୍‌କୁ ଦୁଇ ତିନିଦିନ ଭୀଷଣ ଜର ହେଲା । ମୁଁ ଶାଶୂଙ୍କୁ ହାତଯୋଡ଼ି କହିଲି—"କିଛି ଟଙ୍କା ଦିଅନ୍ତୁ । ମୁଁ ଛୁଆଟାକୁ ଯାଇ ଡାକ୍ତରଙ୍କୁ ଦେଖାଇ ଆଣେଁ । ସେ କହିଲେ—"ଏତେ ଛୋଟ ପିଲାକୁ ଡାକ୍ତରୀ ଔଷଧ ଦେବା ଭଲ ନୁହେଁ, ବାଲିକରି ପିଆଇ ଦିଅ ।"

ମୁଁ ଟିକିଏ ରାଗି କରି କହିଲି — "ବହୁତ ଜର ହୋଇଛି, ବାଲିରେ କିଛି ହେବ ନାହିଁ— ଟଙ୍କା ଜଲ୍‌ଦି ଦିଅନ୍ତୁ ମୁଁ ତାକୁ ଡାକ୍ତରଙ୍କୁ ନେଇ ଦେଖାଇବି ।"

ସେ ଗାଳି କଲେ— "ଖବରଦାର୍ ! ମୁହଁ ଉପରେ ଜବାବ୍ ଦେଉଛୁ, ତୋ ଜିଭ ଓପାଡ଼ି ଆଣିବି । କ'ଣ ବା ତାର ହୋଇଛି ଯେ ଏତେ ଅଧୀର ହୋଇ ପଡ଼ୁଛୁ ? ମରିଯିବତ କ'ଣଟା ସୃଷ୍ଟି ପ୍ରଳୟ ହୋଇଯିବ ।"

ଏକଥା ଶୁଣି ମୁଁ ପାଗଳ ହୋଇଗଲି, ମୋ ହୋସ୍ ଉଡ଼ିଗଲା । ଏତେ ଦିନର ଦବି ରହିଥିବା କଷ୍ଟ ସବୁ ପଦାକୁ ବାହାରି ପଡ଼ିଲା । ମୋର ଖିଆଲ ନାହିଁ ମୁଁ କଣ କଣ ସବୁ ବକି ଗଲି । ଶାଶୂ ଗର୍ଜି ଉଠିଲେ ଆଉ ଚପଲରେ ମୁଣ୍ଡରୁ ଛଅଥର ଆଣିବୁଝିଆ ପିଟି ପକାଇଲେ, ଗୋଡ଼ରେ ଗୋଇଠା ମାରିଥିଲେ ଆଉ ସେ ଅଫିସ୍ ମାନେ ମୋ ନାଁରେ ଛୁଗୁଲିଆଇ କହିଲେ- "ମୁଁ ତତେ ଜନ୍ମ ଦେଇ ପାଳି ପୋଷି ଏତେବଡ଼ କରିଥିଲି କଣ ତୋ ସ୍ତ୍ରୀଠୁ ଅପମାନ ଶୁଣିବାପାଇଁ, ଲାଜ ନାହିଁ ତତେ ? ଯଦି ଭଲ ଗଢ଼ ଅଛୁତ, ଏ ଡାହାଣୀ ବୋହୂକୁ ଘରୁ ବାହାର କରିଦେ ନହେଲେ ତୁ ଭାବିନେ ତୋର ଜନ୍ମ କଲା ମାଆ ମରିଗଲାଣି ।"

ମୁଁ ମୋ ସ୍ୱାମୀଙ୍କ ଆଡ଼କୁ ଅନେକ ଆଶାନେଇ ଅନେଇଲି । କିନ୍ତୁ ମୋର ଆଶା ଆଶାରେ ରହିଗଲା । ସେ ନିଜ ମା'ଆ କଥାରେ ପଡ଼ି ମତେ ଧକ୍କା ଦେଇ ଘରୁବାହାର କରିଦେଲେ । ପଛପଟୁ ଶାଶୁ ଆସି କହିଲେ ନେଇଯା ତୋର ପୁଅକୁ । ଆଉ ଖବରଦାର, ଯଦି ଏଘରେ ଆଉଥରେ ରୁ ମୁହଁ ଦେଖାଉଛି... ।

କିଛି ସମୟ ଧରି ମୁଁ ଘରୁ ବାହାରି ଆସି ପଦାରେ ଠିଆ ହେଲି । କାଳେ କବାଟ ଖୋଲିବ ଏବଂ ସେ ମତେ ପୁଣି ଭିତରକୁ ଆଦରେ ନେଇଯିବେ ଏଇ ଆଶାରେ । କିନ୍ତୁ ସବୁ ବ୍ୟର୍ଥ ହେଲା । ଭାବିଲି ଆତ୍ମହତ୍ୟା କରିଦେବି । କିନ୍ତୁ 'ସୋନାଲ୍'ର ମୋହ ମତେ ଅଟକାଇ ରଖିଲା । ମୁଁ କିଛି ଚିନ୍ତା କରି ନ ପାରି ଘରୁ ବାହାରି ଆସି ମୋର ଜଣେ ବାନ୍ଧବୀଙ୍କ ପାଖରେ ପହଂଚିଲି । ତାଙ୍କୁ ସବୁ କଥା କହିଲି ।

ଘର ଲୋକେ ମୋତେ ବାହାର କରିଦେଲେ । କିନ୍ତୁ ବାହାର ଲୋକେ ମୋତେ ସହାନୁଭୂତି ଦେଖାଇଲେ । ବାନ୍ଧବୀ ଜଣକ ମତେ ଲକ୍ଷ୍ନୌ ପର୍ଯ୍ୟନ୍ତ ଟିକେଟ କରି ଟ୍ରେନରେ ବସାଇ ଦେଇଗଲେ । ଲକ୍ଷ୍ନୌକୁ ଟେଲିଗ୍ରାମ ମଧ୍ୟ କରିଦେଲେ । କିନ୍ତୁ କ'ଣ କରିବି । ଲକ୍ଷ୍ନୌରେ ପହଂଚି କାହାକୁ ମୁହଁ ଦେଖାଇବି କିଛି ବୁଝି ପାରିଲି ନାହିଁ । ଚାରିଆଡ଼େ ମତେ ଅନ୍ଧକାର ଦେଖାଗଲା । ଆପଣ ହିଁ କୁହନ୍ତୁ ମୁଁ କ'ଣ କରିବି ?

କିଛି ସମୟ ଧରି ମୋ ମୁହଁରୁ କୌଣସି ଶବ୍ଦ ବାହାରିଲାନାହିଁ । ମନରେ ଖୁବ ଦୁଃଖ ହେଲା । ପୁଣି ସଂଯତ ହୋଇ ସ୍ନେହରେ ତାକୁ ବୁଝାଇଲି "ତମେତ ପାଠପଢିଛ, ନିଜକୁ ବୁଝିବାପାଇଁ ଚେଷ୍ଟାକର, ନିଜ ଉପରୁ ବିଶ୍ୱାସ ହରାଅ ନାହିଁ, କେଉଁଠି ଯାଇ କାମ କର ଆଉ ନିଜ ଗୋଡ଼ରେ ଠିଆ ହେବାପାଇଁ ଚେଷ୍ଟାକର ! ଆମେ ସ୍ତ୍ରୀ ଲୋକସବୁ ପୁରୁଷମାନଙ୍କଠାରୁ କୌଣସି ଗୁଣରେ କମ୍ ନୋହୁଁ । ବିଜ୍ଞାନ ଯୁଗରେ ସ୍ତ୍ରୀ

ପୁରୁଷ ଉଭୟଙ୍କ ସମାଜରେ ସମାନ ଅଧିକାର । ଦେଖ, ଶ୍ରୀମତୀ ଇନ୍ଦିରାଗାନ୍ଧୀ ତ ସ୍ତ୍ରୀ···ସେ ପୁଣି ତ ପ୍ରଧାନମନ୍ତ୍ରୀ ଥିଲେ, ଦେଶର ଶାସନ ଚଳାଇଲେ । କୌଣସି ଅସୁବିଧାରେ ସେଙ୍କ ପଡ଼ିବା କଥା ନୁହେଁ । ସବୁବେଳେ ଅନ୍ଧକାର ପରେ ହିଁ ଆଲୋକ ଆସେ । ତମେ ପ୍ରତିଜ୍ଞା କର, ଏ ଦୁନିଆ ସାଙ୍ଗରେ ଲଢ଼ିବ ଆଉ ଜୀବନରେ ହାରିଯିବା ପାଇଁ ଚେଷ୍ଟା କରିବ ନାହିଁ । ଜୀବନ ସଙ୍ଗେ ସଂଗ୍ରାମ କରି ବଂଚିବା ଶିଖ !"

ସେ ମୋ ହାତକୁ ଖୁବ୍ ଯୋରରେ ଧରି କହିଲେ—"ଆଜି ଆପଣ ମତେ ଆଶାର କିରଣ ଦେଖାଇଛନ୍ତି । ମୁଁ ନିଶ୍ଚେ ଚେଷ୍ଟାକରିବି ଜୀବନରେ ନିଜ ଗୋଡ଼ରେ ଠିଆ ହେବାପାଇଁ । ଏହା ହିଁ ମୋର ପଣ ।"

× × ×

କେତେବର୍ଷ ବିତିଗଲା । ଟ୍ରେନରେ ଲକ୍ଷ୍ନୌ ଆସିବା ଘଟଣାକୁ ମୁଁ ଧୀରେ ଧୀରେ ଭୁଲିଯାଇଥିଲି । ଗୌହାଟିରୁ ମୋ ଭଉଣୀ ବାରମ୍ବାର ପତ୍ର ଲେଖୁଥିଲା କି ମୁଁ ତାର ଝିଅ 'ଅନୁଜା'କୁ କଲିକତାରେ କଲେଜରେ ଆଡ୍‌ମିଶନ କରାଇ ଦେବି । କାରଣ ଗୌହାଟି କଲେଜରେ ପଢ଼ାପଢ଼ି ଠିକ୍ ହେଉ ନ ଥିଲା । ମୁଁ ଶିକ୍ଷାନିକେତନରେ ପ୍ରିନ୍‌ସିପାଲ୍‌ଙ୍କୁ ଦେଖାକରିବାକୁ ଗଲି । ବାହାରେ ଥିବା କିରାଣୀ ମତେ ଅଟକାଇଲା । କହିଲା, ଭଉଣୀ ଏ ପ୍ରିନ୍‌ସିପାଲ ଖୁବ୍ କଡ଼ା ମିଜାଜର । ଟିକେ ଦେଖିଶୁଣି କଥାବାର୍ତ୍ତା କରିବେ ।

ମୁଁ ଚଳିଗଲି, କେମିତିଭାବେ କଥାଟା ଆରମ୍ଭ କରିବି । କିଛି ଭାବି ଚିନ୍ତି ତାଙ୍କ କୋଠରୀକୁ ଗଲି । ସେ ଫାଇଲ୍ କାମ କରୁଥିଲେ । ମୋତେ ଆସିବା ଦେଖି ସେ ମୁହଁ ଉପରକୁ କଲେ । ମୁଁ ତାଙ୍କୁ ଦେଖି ଚକିତ ହୋଇ ରହିଗଲି । ସେ ମଧ୍ୟ ମୋ ମୁହଁକୁ ଅନେଇ ରହିଗଲେ । ପୁଣି ନିଜ ଚୌକିରୁ ଉଠିଆସି ମୋତେ କୁଣ୍ଢେଇ ପକାଇଲେ ।

ହଁ ଦଦ, ମୁଁ ସେଇ ଟ୍ରେନ୍‌ରେ ଦେଖାହୋଇଥିବା ଝିଅ୍‌ଟିକ 'ମୀନଲ୍' । ଏସବୁ ଆଜ ଆପଣଙ୍କ ପ୍ରେରଣାର ଫଳ । ଆପଣ ମତେ ଅନ୍ଧକାର ମଧ୍ୟରେ ଆଶାର କିରଣ ଦେଖାଇଛନ୍ତି । ମୁଁ ଏଥର ମୋ ଦେଇଥିବା ପଣକୁ ରକ୍ଷାକରି ମୁଁ ନିଜଗୋଡ଼ରେ ଠିଆ ହୋଇଛି । ଆମେ ଦୁଇ ବାନ୍ଧବୀ ହାତ ମିଳାଇ ହସି ଉଠିଲୁଁ ।



## ଶ୍ରଦ୍ଧାଞ୍ଜଳି

ମୋ ହୃତ୍ପିଣ୍ଡରେ ମୋର ଭଗବାନ୍ 'ଚିର ନିଦ୍ରାରେ ଶୋଇଛନ୍ତି। ମୋ ଅଜାଣତରେ ଅନେକ ସମୟ ଧରି ମୁଁ ତାଙ୍କ ପାର୍ଥିବ ଶରୀରକୁ ଏକ ଲକ୍ଷ୍ୟରେ ଅନେଇ ବସିଛି । ଲାଗୁଛି ସତେ ଯେପରି ବର୍ତ୍ତମାନ ହର-ବର କରି ଉଠି ବସିବେ ଏବଂ ମତେ କହିବେ "ମତେ ଖୁବ୍ ନିଦ ଲାଗିଗଲା ଆଉ ତମ ମୁହଁ ଏତେ ଉଦାସ କାହିଁକି ? ହଠାତ୍ ମୁଁ ଚମକି ଦେଖେଁ ତ ସତେ ଯେପରି ସେ ହସୁଛନ୍ତି ।

ଏଇତ ଘଣ୍ଟେ ହେଲା ଆମେ ଦୁହେଁ ଖାଇ ଏକାସାଙ୍ଗରେ ଉଠିଲୁଁ । ହସ ଖୁସିରେ ସେ କଥା କହୁଥିଲେ । ପରେ ତମର ପ୍ରେମର ସାଗରରେ ଡୁବିଯାଇ ମୁଁ କେତେବେଳେ ଶୋଇ ପଡ଼ିଲି ଜାଣେନା । କିଛି ସମୟପରେ ଅସ୍ତବ୍ୟସ୍ତ ହୋଇ ନିଦ ଭାଙ୍ଗିଗଲା । ଉଠି ଦେଖେଁ ତ ତମର ଦେହ ଧୁଅଁପୁଅଁ ଝାଳରେ ଓଦା, ଛାତିରେ ଅସହ୍ୟ ପୀଡ଼ା ସତରେ ତମର ଏ କ'ଣ ହେଲା ତମେ ଖାଲି ଓଃ ଓଃ ହେଉଥାଅ— ବେଦନାରେ ଛଟପଟ ହେଉଥାଅ । ମୁଁ ତମକୁ ବ୍ୟସ୍ତ ହୋଇ କହିଲି କ'ଣ ହେଲା, ତମର କ'ଣ ହେଲା ତମେ ଏମିତି କାହିଁକି ହେଉଛ, ମତେ ଆଗରୁ କାହିଁକି ଉଠାଇଲ ନାହିଁ .. ?

ଏତେ କଷ୍ଟରେ ମଧ୍ୟ ତମେ ଚେଷ୍ଟାକରି ହସି ମତେ ଆଶ୍ୱାସନା ଦେଲ । ପରେ ପରେ ଜଣେ,ଦୁଇଜଣ ଏହିପରି କେତେ ଜଣ ଡାକ୍ତରଙ୍କୁ ମୁଁ

ଫୋନ୍‌ରେ ଡାକିଲି କିନ୍ତୁ କେହି ଜଣେ ହେଲେ ଏଇ ଅଣ୍ଡା ରାତିରେ କବାଟ ଖୋଲି ତମକୁ ଦେଖିବାକୁ ଆସିଲେ ନାହିଁ । ବିଫଳ ମନୋରଥ ହୋଇ ମୁଁ ଦୌଡ଼ି ତମ ପାଖକୁ ଆସିଲି । କିନ୍ତୁ ତମେ ସେତେବେଳକୁ ସବୁ ଶାରୀରିକ ତଥା ମାନସିକ କଷ୍ଟରୁ ମୁକ୍ତି ପାଇ ସାରିଲଣି । ତମର ଆଉ କୌଣସି ଔଷଧ କିମ୍ବା ଡାକ୍ତରର ଆବଶ୍ୟକତା ନଥିଲା ।

ବର୍ତ୍ତମାନ ତମେ ମୋ ପାଖରେ ଆଉ କିଛି ସମୟ ପାଇଁ ଏକାନ୍ତ ହୋଇ ରହିବ । ସକାଳ ହେଲାମାତ୍ରେ ସବୁ ବନ୍ଧୁ ବାନ୍ଧବ କୁଣିଆଁ ମୈତ୍ରଙ୍କ ଭିଡ଼ ଲାଗିଯିବ । ଆଉ ସେମାନେ ସବୁଦିନ ପାଇଁ ତୁମକୁ ମୋଠାରୁ ଛଡ଼ାଇ ନେବେ । ତମର ଯେତେ ଖ୍ୟାତି ପ୍ରଶଂସା ସଦ୍‌ଭାବ ସବୁକିଛି ମୋର ଅବଶିଷ୍ଟ ଜୀବନର ପାଥେୟ ହୋଇ ରହିଯିବ ।

ମୁଁ ତମକୁ ଭଗବାନ ବୋଲି କେବଳ ଏଇଥିପାଇଁ କହୁଥାଏ । ତୁମେ ମୋ ହୃଦୟର ଝୁଲିମୁଣିକୁ ନିଜର ଅଖଣ୍ଡ ପ୍ରେମରେ ଭରିଦେଇଥିଲ । ମୋତେ ଜୀବନରେ ସବୁ ପ୍ରକାର ସୁଖ ଆଉ ସମ୍ମାନ ତୁମେ ଆଣିଦେଇଛ । ନର୍କରୁ ଟାଣିଆଣି ସ୍ୱର୍ଗରେ ବସାଇ ଦେଲ । କେଡ଼େ ବିଶାଳ ହୃଦୟ । ମୋ ମନରେ କେବେହେଲେ ହୀନମନ୍ୟତା'ର ଆଭାସ ବି ଆସିବାକୁ ସୁଯୋଗ ଦେଇନଥିଲ । ହୀରାମୋତି ପରି ପୁଅଟିଏ ଝିଅଟିଏ ମତେ ଦେଇ ମୋ କୋଳ ଭରି ଦେଇଛ 'ମୋ'ପରିବାରକୁ କେଡ଼େ ସୁଖୀ ପରିବାର କରାଇ ଦେଇ ନଥିଲ ।

ମୁଁ ମୋ ବାପା ମା'ଙ୍କର ଏକମାତ୍ର ଝିଅ, ଗୋଟିଏ ଶ୍ରେଷ୍ଠଭାଇ ତୋରଙ୍ଖ । ପିଲାଦିନ ମୋର ବଡ଼ ଆରାମରେ ବାପା ମାଆଙ୍କ ପାଖରେ ବିତିଗଲା । ଯେତେବେଳେ ମୁଁ ବଡ଼ ହେଲି, ମୋର ସୌନ୍ଦର୍ଯ୍ୟ ଦେଖି ବାପା ମାଆମାନେ ମୋର ବିବାହ କିପରି ଏକ ସୁପାତ୍ର ସାଥିରେ କରିବେ ଏହି ଚିନ୍ତାରେ ବୁଡ଼ିରହିଲେ ।

ମୋ ବାପା ସଂସ୍କୃତ ବିଦ୍ୱାନ୍ ଥିଲେ । ସେ ଲକ୍ଷ୍ନୌ ଆର୍ଯ୍ୟସମାଜ ବିଦ୍ୟାଳୟର ପ୍ରିନସିପାଲ୍ ଥିଲେ, ଆମର ଜୀବନ ଏକ ସୁରୁଚିପୂର୍ଣ୍ଣ ଜୀବନ ଥିଲା । ମା' ଆମର ସୁ ଗୃହିଣୀ ଥିଲେ । ଆମଘରେ ପ୍ରତିଦିନ ଧର୍ମଚର୍ଚ୍ଚା ହେଉଥିଲା । କର୍ମ ଧର୍ମ ଆତ୍ମା ପରମାତ୍ମା ବିଷୟରେ ବାପା ଆମକୁ ସବୁ ପ୍ରେରଣା ଦେଉଥିଲେ । ମୁଁ ବାପାଙ୍କୁ ପଚାରୁଥିଲି ବାପା, କଣ ସ୍ୱର୍ଗ ନର୍କ ପ୍ରକୃତରେ ଅଛି, ନାଁ ଏ ସବୁ କେବଳ ଆମକୁ ଡରାଇବା ପାଇଁ ଉଦ୍ଦିଷ୍ଟ ?''

× × ×

ବାପା ଉତ୍ତର ଦେଉଥିଲେ – " ହିଁଅ, ସବୁକିଛି ଏହି ପୃଥିବୀରେ ହିଁ ଅଛି, ଏବଂ କଳିଯୁଗରେ ଆମେ ଏ ଜନ୍ମରେ କର୍ମ ଅନୁସାରେ ସ୍ୱର୍ଗ ବା ନର୍କ ଏହି ଦୁଇଟିରୁ ଗୋଟିଏ ଉପଭୋଗ କରିବାକୁ ସମ୍ଭବ ।' ଦିନେ ସକାଳୁ ବାପା ଖବର କାଗଜ ପଢ଼ୁପଢ଼ୁ ମାଙ୍କୁ ଡାକି କହିଲେ ଗାୟତ୍ରୀର ମାଆ ଦେଖ ! ଆମ ହିଁଅ ଗାୟତ୍ରୀ ପାଇଁ କେମିତି ଏକ ବଢ଼ିଆ ଗୋଟିଏ ଯୋଗ୍ୟ ପାତ୍ରର ବିଜ୍ଞାପନ ଖବର ମିଳିଛି । ''ସୁରେଶ ଶର୍ମା ଏବେ ଆମେରିକାରୁ ଡାକ୍ତର ପାଶ୍ କରି ଫେରିଛନ୍ତି । ବମ୍ବେରେ ପ୍ରାକ୍ଟିସ୍ କରୁଛନ୍ତି । ଆଉ ଆମରି ଜାତି ବ୍ରାହ୍ମଣ ମଧ୍ୟ । ତାଙ୍କର ପାଇଁ କନ୍ୟା ଦରକାର, ବିଜ୍ଞାପନ ଦେଇଛନ୍ତି ।

"ମୁଁ ତାଙ୍କୁ ଆଜି ଚିଠି ଲେଖୁଛି ।

ମୁଁ ଏ ସବୁ କଥା ପର୍ଦ୍ଦା ଫାଙ୍କରେ ଶୁଣୁଥିଲି । ମୋ ହୃଦୟରେ ଏକ ମୃଦୁ ଗୁଞ୍ଜରଣ ଶୁଣାଗଲା । ଆଠଦିନ ପରେ ସେଠୁ ଉତ୍ତର ଆସିଗଲା । ସେମାନେ ମତେ ଦେଖିବା ପାଇଁ ଆସୁଛନ୍ତି । ଆମଘରେ ସମସ୍ତେ ଅତିଥିଙ୍କ ସ୍ୱାଗତ ପାଇଁ ବ୍ୟସ୍ତ ହୋଇଗଲେ । ବାପା ଘର ଦ୍ୱାର ସବୁ ସଫାସଫି କରି ଚୂନ ଲଗାଇ ଦେଲେ । ଷ୍ଟେଟ ଖଇ ଗୋରଖ ଫର୍ନିଚର୍ ଇତ୍ୟାଦିରେ ରଙ୍ଗ ଲଗାଇ ଦେଲି । ମୁଁ ସବୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ଘରେ ମତେ ବିଭାରେ

ବୃଧଘର ଲଗାଇବାକୁ ପଡ଼ିଲା । ଯେପରି ମୋ ମୁହଁ ଅଧିକ ସୁନ୍ଦର ଦେଖାଯାଏ । ଘଣ୍ଟା ଘଣ୍ଟା ଧରି ମୁଁ ଦର୍ପଣ ସାମ୍ନାରେ ବିଭିନ୍ନ ଶାଢ଼ୀ ଅଳଙ୍କାର ପିନ୍ଧି ନିଜକୁ ଦେଖିଲି । ମାଆ ମୋର ସୌନ୍ଦର୍ଯ୍ୟକୁ ବଢ଼ାଇବାରେ ବିଭିନ୍ନ ପ୍ରକାରର ଯତ୍ନ ନେଲେ । ବାପା ମଧ୍ୟ ଅତିଥିମାନଙ୍କ ସ୍ୱାଗତ ନିମନ୍ତେ ସବୁପ୍ରକାରର ବନ୍ଦୋବସ୍ତ କରିବାରେ ଲାଗିପଡ଼ିଲେ ।

ଅତିଥିମାନେ ନିର୍ଦ୍ଧାରିତ ସମୟରେ ଆସିଲେ । ସେ ତାଙ୍କର ଭାଇମାନଙ୍କ ସହ ଆସିଥିଲେ । ମୁଁ କବାଟ ଆଢ଼ୁଆଳରୁ ତାଙ୍କୁ ଦେଖିଲି । ତାଙ୍କ ଦୃଷ୍ଟିରେ ମୁଗ୍ଧ ହୋଇଗଲି । ଲମ୍ବା ଶରୀର, ଗୋରାବର୍ଣ୍ଣ, ଆକର୍ଷଣୀୟ ଚେହେରାରେ ଅନ୍ୟକୁ ଧରି ରଖିବାର ଶକ୍ତିଥିଲା ।

ଦେଖୁ ଦେଖୁ ଆମେ ଦୁଇଜଣ ପରସ୍ପରକୁ ପସନ୍ଦ କରିନେଲୁ । ମା କହିଲା—ପୁଅର ବୟସ କିଛି ଅଧିକ ହେଲା ଭଳିଆ ଜଣାପଡୁଛି – ତାର ବାପ ମାଆ ମଧ୍ୟ ନାହାନ୍ତି ଏଇଟା ମଧ୍ୟ ଦେଖିବାକୁ ପଡ଼ିବ ।

ବାପା ମାଆଙ୍କୁ ବୁଝାଇଲେ—ଆରେ ଏତେ ପାଠ ପଢ଼ିଛି ତେଣୁ ବୟସ ଟିକିଏ ଅଧିକ ହେବାଟା ସ୍ୱାଭାବିକ । ଅଉ ବାପା ମାଆ ନ ଥିଲେ କଣ ହେବ - ବଡ଼ ଭାଇ ଭାଉଜ ଅଛନ୍ତି । ତା'ପରେ ତମ ଝିଅ ମଧ୍ୟ ଆରାମରେ ରହିବ କାରଣ ଶାଶୁଘରେ କେହି ନାହାନ୍ତି ।

ସବୁଠିକ୍ ହୋଇଗଲା । ସେ ମତେ ଖୁବ୍ ଦାମୀ ହୀରାର ମୁଦି ପିନ୍ଧାଇଲେ । ବାପା ମଧ୍ୟ ସମ୍ପୃକ୍ତ ବାବଦକୁ ଏଗାର ଶହ ଟଙ୍କା ଦେଲେ । ସାଙ୍ଗରେ ବହୁତ ଫଳ ଆଉ ମିଠାଦେଲେ ।

ସେମାନେ ଗଲାପରେ ଆମ ଘରଟା ବହୁତ ଶୁନ୍ଶାନ ଲାଗିଲା । ଦିନକ ମଧ୍ୟରେ ତାଙ୍କର ସରଳ ସ୍ୱଭାବ ମିଠା ବ୍ୟବହାର ସମସ୍ତଙ୍କୁ ଆକୃଷ୍ଟ କରି ରଖିଥିଲା । ଗୋରଖ ତ ତାଙ୍କୁ ବହୁତ ପସନ୍ଦ କରୁଥିଲା ।

ସେମାନେ ବିହୁତ ପଲ୍ଲି ବାହାଘର କରିବାକୁ ଚାହୁଁଥିଲେ । ଆଉ ବାପା ମଧ୍ୟ ତାଙ୍କର କର୍ତ୍ତବ୍ୟ ସଂପାଦନ କରି ମୁକ୍ତ ହେବା ପାଇଁ ଚାହୁଁଥିଲେ । ମୁଁ ମଧ୍ୟ ବି. ଏ. ପରୀକ୍ଷା ଦେଇ ଖାଲିଟାରେ ଘରେ ବସିଥିଲି । ଏଣୁ ପନ୍ଦର ଦିନ ଭିତରେ ବିବାହ କରିବାକୁ ସ୍ଥିର ହୋଇଗଲା । ଖୁବ୍ ଜୋର୍‌ରେ ବିବାହର ପ୍ରସ୍ତୁତି ଆରମ୍ଭ ହୋଇଗଲା । ମା' ନିଜର ବାହାଘର ଦିନର ଅଳଙ୍କାର ଇତ୍ୟାଦି କାଢ଼ି ତାଲିକା କରିବାକୁ ଦେଇଦେଲେ । ମୋର ଦିନଗୁଡ଼ା ସବୁ ବଣିଆ ଦୋକାନ ଆଉ ଶାଢ଼ୀ ଦୋକାନରେ ହିଁ କଟିଗଲା । ଗୋରଖଙ୍କୁ ନିଶ୍ୱାସ ମାରିବାକୁ ସମୟ ହେଲାନାହିଁ । ସବୁ କାମରେ ତାଙ୍କୁ ଲଗାଇ ଦିଆଗଲା । ବାପ ମଧ୍ୟ ବ୍ୟାଙ୍କରୁ କିଛି ପଇସା ଉଠାଇଲେ । ଆଉ ପ୍ରୋଭିଡେଣ୍ଟଫଣ୍ଡରୁ ମଧ୍ୟ କିଛି ଟଙ୍କା ଉଠାଇଲେ । ଝିଅ ତ ଗୋଟିଏ, ତାର ବିବାହ ଖୁବ୍ ଧୁମ୍‌ଧାମରେ ହେବାକୁ ପଡ଼ିବ ।

....

ଧୀରେ ଧୀରେ ବାହାଘର ପାଇଁ ଆମ ଘରକୁ ଲୋକମାନେ ଆସିବାରେ ଲାଗିଲେ । ବାହାଘର ଦିନ ପହଂଚିଗଲା । କିଛି ଲୋକ ବରଯାତ୍ରୀଙ୍କୁ ଆଣିବା ପାଇଁ ଷ୍ଟେସନ ଗଲେ । ଘରେ ମାଇକରେ ଗୀତର ଲହରୀ ଛୁଟୁଥିଲା । ଏହି ସମୟରେ ଗୋରଖ ଡରି ଡରି ଆସି ଘରେ ପଶିଯାଇ କହିଲା ବରଯାତ୍ରୀମାନେ ଯେଉଁ ଟ୍ରେନ୍‌ରେ ଆସୁଥିଲେ ସେଥିରେ ଡ଼କାଯିତ ହୋଇଛି । ସବୁ ବାହାଘରର ଜିନିଷ ଏବଂ ଭଉଣୀଙ୍କର ଅଳଙ୍କାର ଡ୍ରେସ୍ ଇତ୍ୟାଦି ସବୁ ଡକାୟତମାନେ ଲୁଟି ନେଇଛନ୍ତି । ବରଯାତ୍ରୀମାନେ ବାଟରୁ ଫେରିଗଲେ—କେବଳ ବର ଏବଂ ତାଙ୍କର ଦୁଇଜଣ ସାଥି ବସିଛନ୍ତି ।

ମୋ ମାଆ ମୁଣ୍ଡପିଟି କାନ୍ଦିବାକୁ ଆରମ୍ଭ କରିଦେଲେ—ବାପା ବୁଝାଇଲେ "ତୁମେ କାହିଁକି କାନ୍ଦୁଛ ଗାୟତ୍ରୀ ମା ! ଜୀବନ ଅଛିତ ସବୁକିଛି

ଅଛୁ । କୋଉଁଙ୍କୁ ଆମେ ପୁଣି ସବୁ କଣିଦେବା । ଅଳଙ୍କାର ଡ୍ରେସ୍ ପତ୍ର ସବୁ ଆଉଥରେ ହେବ, ବ୍ୟସ୍ତ କାହିଁକ ?''

ଅାମେ ସବୁ ଶୁଣି ଟିକଏ ଆଶ୍ଚର୍ଯ୍ୟ ଲଭ କଲୁ ବାହାଘର ସୁରୁଙ୍ଗରୁରେ ହୋଇଗଲ । ମୁଁ ମୋର ମଧୁର ସ୍ୱପ୍ନରେ ବଭୋର ହୋଇ ଘରୁ ବଦାୟ ନେଲ । ଆମେ ଦୁହେଁ ଟ୍ରେନ୍‌ରେ ଫାଷ୍ଟ କ୍ଲାସ୍ କୁପେରେ ଏକୁଟିଆ ଥିଲୁଁ । ବମ୍ବେର ଲମ୍ବା ଯାତ୍ରା··· ସେ ମତେ କହିଲେ— ''ଯେତେ ସବୁ ଅଳଙ୍କାର ଓହ୍ଲାଇ ଦିଅ ଶସ୍ତା ଅଳଙ୍କାର ପିନ୍ଧ ଆଉ ସେ ପାଟଶାଢ଼ୀ ବଦଳାଇ ଅନ୍ୟ ଶାଢ଼ୀ ପିନ୍ଧପକାଅ— ସବୁ ଜିନଷ ସାବଧାନରେ ରଖ— ଆସିଲ ସମୟରେ ଆମ ବର୍ଗରେ ଡକାୟତ ହୋଇଥିଲ ।'' ସେ କହିବା ପ୍ରକାରେ ସବୁ ଜିନଷ ମୁଁ ଓହ୍ଲାଇ ତାଙ୍କର ଜମା ଦେଇଦେଲ । ମୋର ସବୁ ବାକ୍ସର ଚାବି ମଧ୍ୟ ଦେଇ ଦେଲ ।

ବବାହର ପ୍ରଥମ ରାତକୁ ଆମେଦୁହେଁ ସେଇ ଚଳନ୍ତା ଟ୍ରେନ୍‌ର କୁପେରେ ବଡ଼ ଆରାମରେ ଉପଭୋଗ କଲୁଁ । ପରଦନ ସକାଳୁ ମୁଁ ମଧୁର ସ୍ୱପ୍ନରେ ମଜ୍ଜିଯାଇ ଅନେକ ଡେର ପର୍ଯ୍ୟନ୍ତ ଶୋଇରହି କେବଳ ତାଙ୍କୁ ହିଁ ଦେଖୁଥିଲ । ସେ କହିଲେ — ''ଆରେ ଉଠ ଆଗରେ ନାଗପୁର ଷ୍ଟେସନ୍— ତମେ ଉଠି ମୁହଁ ହାତ ଧୋଇନଅ ଆମେ ଏଠି ଚାହା ଖାଇବା । ମୁଁ ତାଙ୍କର କଥାମାନ ସୁନା ପିଲଟି ପରି ଉଠି କାମ ସାରିଲ । ସାଙ୍ଗ ହୋଇ ଆମେଦୁହେଁ ଚାହା ପିଇଲୁ ।

ସେ ମୋତେ ଗମ୍ଭୀରହୋଇ କହିଲେ— ''ଏ ମୋର ପ୍ରଥମ ବବାହ ନୁହେଁ । ପୂର୍ବରୁ ଦୁଇ ଥରଅର ବାହାଘର ସରିଛୁ । ଧନୀଘରର ଝିଅମାନେ ଖୁବ୍ ଯଲ୍‌ଦ ବର୍ଷେ ଦେଢ଼ବର୍ଷ ଭିତରେ ଆରପାରିକୁ ଚାଲିଗଲେ କମ୍ପା ତାଙ୍କୁ ସେପାରିକୁ ବଦାକରି ଦିଆଗଲ । ମନେରଖ ଯଦ ତମେ ମୋ କଥାରେ ମଲବ ତ ଠକ ନହେଲେ ତମେ ପୁଣି ସେମାନଙ୍କପରି ଦଶା

ଭୋଗିବ । ନହେଲେ ତିମର• ଏ ଅପାର ରୂପ ମୋର ବହୁତ କାମରେ ଲାଗିବ । ଜାଣିରଖ ମୋ ବିରୁଦ୍ଧରେ କେବେହେଲେ ଗୋଟିଏ ଶବ୍ଦ ମଧ୍ୟ କହିବ ନାହିଁ । ଯଦି ତମେ କେବେହେଲେ ମୋ ବିରୁଦ୍ଧରେ କହିବ କିମ୍ବା ପାଟି କରିବ କିମ୍ବା ଘରୁ ପଳାଇଯିବା ପାଇଁ ଚେଷ୍ଟାକରିବ ତେବେ ତମ ସହିତ ତମ ବାପାଙ୍କୁ ଏବଂ ଭାଇଙ୍କୁ ମଧ୍ୟ ମୁଁ ଆରପାରିର ରାସ୍ତା ଦେଖାଇ ଦେବି । ମୁଁ ଡାକ୍ତର, ମୋ ପାଖରେ ଏମିତି ଔଷଧ ଇଞ୍ଜେକ୍‌ସନ୍‌ ଅଛି ଯେ କେହି ସନ୍ଦେହ କରିବେ ନାହିଁ ଯେ ମୁଁ ସେମାନଙ୍କୁ ମାରିଛି ବୋଲି ।''

ମୁଁ ସତରେ ଏକ୍‌ଦମ୍‌ ସ୍ୱର୍ଗରୁ ପାତାଳକୁ ଖସିଗଲେ, ମୋ ମନଭିତରେ ଉବ୍‌ଟୁବ୍‌ ହେଉଥିବା ପ୍ରେମର ନିଶା ଛୁଟିଗଲା । ଯେ ମୋ ସାମ୍‌ନାରେ ଦେବତା ତୁଲ୍ୟ ମନେ ହେଉଥିଲା ସେ ବର୍ତ୍ତମାନ ଦାନବ ପରି ଦୃଶ୍ୟମାନ ହେଲା ।

ମୁଁ ନିରାଶା ଆଉ ଭୟରେ କାନ୍ଦିବାରେ ଲାଗିଲି ସେ ଶାନ୍ତ-ଭାବରେ ନିଜର ବ୍ୟାଗରୁ ଇଞ୍ଜେକ୍‌ସନ୍‌ କାଢ଼ିଲେ ଏବଂ ଔଷଧ ପୁରାଇଲେ ଏବଂ ମୁଁ କିଛି କହିବା ପୂର୍ବରୁ ମୋ ବାହୁରେ ଦେଇଦେଲେ ।

କିଛିକ୍ଷଣପରେ ମତେ ନିଦ ଆସିଗଲା ଯେତେବେଳେ ହୋସ୍‌-ଆସିଲା ମୁଁ ବମ୍ବେ ଷ୍ଟେସନ୍‌ରେ ପହଞ୍ଚି ସାରିଥିଲି । ''ସେ କହିଲେ ଚାଲ ଏଥର ଘରକୁଯିବା କିନ୍ତୁ ଶୁଣ ମୁଁ କହିଥିବା କଥା ମନେରଖିବ ପାଟିରୁ ଗୋଟିଏ ଶବ୍ଦ ଯେମିତି ନ ବାହାରେ ।''

ମୁଁ ଚୁପ୍‌ଚାପ୍‌ ତାଙ୍କ ସାଙ୍ଗରେ ଆସିଲି । ଟ୍ୟାକ୍‌ସିରେ ଆମେ ବାନ୍ଦ୍ରାରେ ପହଞ୍ଚିଲୁ । ତାଙ୍କର ଘର ବହୁତ ପୁରୁଣା କାଳର ଥିଲା । ବାହାରେ ଡାକ୍ତରଙ୍କ ନାମଫଳକ ଟଙ୍ଗା ହୋଇଥିଲା । ଫ୍ଲାଟ୍‌ ମଧ୍ୟରେ ସବୁ ପ୍ରକାରର ଆଧୁନିକ ସୁବିଧା ସୁଯୋଗର ବନ୍ଦୋବସ୍ତ କରା ଯାଇ ଥିଲା ।

ମୁଁ ଟିକେ ଶାନ୍ତିରେ ନିଶ୍ୱାସ ମାରିଲି । ସେ କହିଲେ "ଦେଖୁଛ-କ'ଣ, ଝାଡ଼ୁ ଆଣ ଘର ସଫାକର, ଲୁଗାପଟା ଧୁଅ, ଆଉ ରୋଷେଇ ଘରକୁ ଯାଇ ଖାଇବାର ବନ୍ଦୋବସ୍ତ କର । ଏହା ତମ ବାପଘର ନୁହେଁ, ଏଠି ସବୁକାମ ନିଜେ କରିବାକୁ ପଡ଼େ ।"

ମୁଁ ଘରର ସବୁକାମ କଲି ଆଉ ସନହାବ୍ ତାଙ୍କ ସାଙ୍ଗରେ ଏବଂ ଫଟୋଗ୍ରାଫରମାନଙ୍କ ସାଙ୍ଗରେ ବିଭିନ୍ନ ଚଳଚିତ୍ର ନିର୍ମାତା ଆଉ ନିର୍ଦ୍ଦେଶକଙ୍କ ଷ୍ଟୁଡ଼ିଓ ଘୂରିବାରେ ଲଗିଲି । ଭିନ୍ନ ଭିନ୍ନ ପୋଜ୍‌ରେ ମୋର ଫଟୋ ନିଆଗଲା । ମୋର ଅଭିନୟ ଆଉ କଣ୍ଠସ୍ୱରର ପରୀକ୍ଷା ମଧ୍ୟ କରାଗଲା । ସନ୍ଧ୍ୟାବେଳେ ଘରକୁ ଫେରି ମୁଁ ଥକି ପଡ଼ୁଥିଲି । ଇଚ୍ଛା ହେଉଥିଲା ମୁଁ ବିଛଣାରେ ଲେଟିଯାଆନ୍ତି କି ? କିନ୍ତୁ ସନ୍ଧ୍ୟାବେଳେ ଘରେ ପୁଣି ଅତିଥିମାନେ ଆସନ୍ତି ତାଙ୍କର ଚର୍ଚ୍ଚା କରିବାକୁ ପଡ଼ୁଥିଲା । ମୁଁ ବଡ଼ କଷ୍ଟରେ ସେମାନଙ୍କ ସାଙ୍ଗରେ ହସି କଥା କହୁଥିଲି । ମଦ ବୋତଲ ଖୋଲିବାଠାରୁ ସେମାନଙ୍କୁ ଖାଇବାକୁ ଦବା ପର୍ଯ୍ୟନ୍ତ ସବୁ କାମ କରିବାକୁ ପଡ଼ୁଥିଲା । ସେଇ ଅତିଥି-ମାନେ ମୋତେ ନାନା ପ୍ରକାର ବ୍ୟଙ୍ଗକଥା କହୁଥିଲେ । କିନ୍ତୁ ସେ(ମୋରସ୍ୱାମୀ) ସେମାନଙ୍କୁ କିଛି କହୁ ନଥିଲେ । ସବୁ ଦେଖି ଚୁପ୍‌ଚାପ୍ ରହୁଥିଲେ । ବେଳେବେଳେ ସେ ମତେ ଏ ଅତିଥିମାନଙ୍କ ଜିମା ଛାଡ଼ି ପାନକିମ୍ବା । ମିଠାଇ ଆଣିବା ବାହାନାରେ ବାହାରକୁ ଚାଲିଯାଉଥିଲେ । ମୁଁ ମୋର ହୋସ୍ ହରାଉଥିଲି । ଅତିଥିମାନେ ମୋତେ ତାଙ୍କର ଖାଦ୍ୟଭଳିବ ବ୍ୟବହାର କରିବାକୁ ପଛାଇଲେ ନାହିଁ ।

ଯା ଭିତରେ ମୋ ଭାଇ ମୋତେ ଦୁଇ ଦିନଥର ନବାପାଇଁ ଆସିଥିଲା । ସେ ତା ସାଙ୍ଗରେ ମିଠା ମିଠା କଥାକହି ଗାଡ଼ିରେ ବମ୍ବେ ସହର ବୁଲାଇ ଦେଖାଇ ଆଣିଲେ ଏବଂ ଏମିତି ବନ୍ଦୋବସ୍ତ କଲେ ଯେପରି ମୁଁ ଏକୁଟିଆ ତା ସାଙ୍ଗରେ କଥାବାର୍ତ୍ତା କରି ନପାରେ । ଶେଷକୁ ମୋ ଭାଇ ମୋତେ ନନେଇ ଖାଲି ଖାଲି ଫେରିଗଲା ।

ସେ ଯେତେବେଳେ ବାହାରକୁ ଯାଆନ୍ତି ସେତେବେଳେ ଫାଟକ ବାହାରେ ତାଲା ପକାଇ ଯାଆନ୍ତି । ମତେ ପଇସାଟିଏ ହେଲେ ଖର୍ଚ୍ଚ କରିବା-ପାଇଁ ଦିଅନ୍ତି ନାହିଁ । ବଜାର ହଉଦା ସେ ନିଜେ କରୁଥିଲେ କିମ୍ବା କାହା ହାତରେ ମଗାଇ ଦେଉଥିଲେ ।

ମୁଁ କ'ଣ କରିବ କୁଆଡ଼େ ଯିବି କିଛି ଚିନ୍ତା କରିପାରୁ ନଥିଲି । ମଝିରେ ମଝିରେ ସୁରେଶ ମତେ କ'ଣ ସବୁ ଇଞ୍ଜେକ୍ସନ୍ ଦେଉଥିଲେ । ସେହି କାରଣରୁ ମୋ ଦେହ ମନ କ୍ରମଶଃ ଦୁର୍ବଳ ହୋଇ ଯାଉଥିଲା । ପରେ ମୋତେ ଜଣାପଡ଼ିଲା ମୁଁ ମାଆ ହେବାକୁ ଯାଉଛି । ସେ ଯେତେବେଳେ ଏକଥା ଶୁଣିଲେ ଖୁବ୍ ଚିଡ଼ି ଉଠିଲେ ।

"ଏ କି କଥା— ଛୁଆ ହେଲେ ତମ ଶରୀରର ସୌନ୍ଦର୍ଯ୍ୟ ନଷ୍ଟ ହୋଇଯିବ ଏବଂ ଦାମ୍ ମଧ୍ୟ କମ୍ ହୋଇଯିବ । ଏ ଛୁଆଟାକୁ ନଷ୍ଟ କରିବାକୁ ହିଁ ପଡ଼ିବ ।"

ମୁଁ ଏହି ଜାଆନ୍ତା ନର୍କରୁ ମୁକ୍ତିଲାଭ କରିବାକୁ ଏବଂ ସନ୍ତାନର ଭବିଷ୍ୟତ କଥା ଚିନ୍ତା କରିବାକୁ ଲାଗିଲି । ଏବଂ ଏକ ଉପାୟ ଚିନ୍ତାକଲି ।

ମୁଁ ସାଙ୍ଗେ ସାଙ୍ଗେ ଏ ସବୁ ଘଟଣା ଜଣାଇ ବାପାଙ୍କପାଖକୁ ଚିଠି ଲେଖିଲି । ତାଙ୍କ ଆଲ୍‌ମାରୀରୁ ଲଫାପାଟିଏ କାଢ଼ି ଡାକଟିକେଟ୍ ନଲଗାଇ ପଠାଇଦେଲି । ମୋ ପାଖରେ ଟିକଟ ଲଗାଇବାପାଇଁ ପଇସା ନଥିଲା । ତା ଛଡ଼ା ଶୁଣିଥିଲି ଯେ ବେରିଂ ଚିଠି କୁଆଡ଼େ ଯଲ୍‌ଦି ପହଞ୍ଚିଯାଏ ।

ମୁଁ ଲେଖିସାରି ଘରର ଝରକା ପାଖରେ ଠିଆହେଲି । ଯେତେ-ବେଳେ ପାଖ ଘରର ଗୁହକର୍ତ୍ତ୍ରୀ କାମ କରିବାପାଇଁ ଯାଉଥିଲା, ମୁଁ ତା ହାତରେ ଚିଠିଟି ପକାଇବାପାଇଁ ଦେଲି ଆଉ ଅନୁରୋଧ କରି କହିଲି "ଏ ବିଷୟରେ ସେ ଯେମିତି ଆଉ କାହାକୁ ନଜଣାଏ ।"

କିଛି ଦିନପରେ ସୁରେଶ ମତେ ଡାକି କହିଲେ "ଆଜି ରାତିରେ ତମେ ଖୁବ୍ ବଢ଼ିଆ ଖାନା ତିଆରି କରିବ, ଆଉ ନିଜକୁ ଖୁବ୍ ଭଲ ବେଶରେ ସଜାଇବ କାରଣ ଆମ ଘରକୁ ଆଜି ସିନେମା ଜଗତର ଜଣେ ପ୍ରସିଦ୍ଧ ନିର୍ମାତା ତଥା ନିର୍ଦ୍ଦେଶକ ଆସିବେ। ତମର ଫଟୋ ତାଙ୍କୁ ପସନ୍ଦ ହୋଇଛି। ସେ ତାଙ୍କର ନୂଆ ଚିତ୍ରପାଇଁ ତମକୁ ନାୟିକା ରୂପେ ବାଛିବେ, ହଁ ମନେରଖ ତାଙ୍କର ସତ୍କାର କରିବାରେ ଯେମିତି କିଛି ତ୍ରୁଟି ନ ରହେ।"

ମୁଁ ଯେତେବେଳେ ଖାନା ତିଆରି କରୁଥିଲି ମୋ ଦେହ ଅବଶ ହୋଇ ପଡୁଥିଲା। ଶରୀର ବଳଶୂନ୍ୟ ହୋଇଯାଉଥିଲା। ବାରମ୍ବାର ବାନ୍ତି ହେଉଥିଲା। ମୁଁ ଉଠି ପାରୁ ନ ଥିଲି।

ବାହାର ଡ୍ରଇଂ ରୁମ୍‌ରେ ବୋତଲ୍‌ର ଶବ୍ଦ ଶୁଭୁଥିଲା। ସେ ଥରକୁ ଥର ମୋତେ ଡାକୁଥିଲେ। ମୁଁ ଉଠିବାକୁ ଚେଷ୍ଟାକରି ମଧ୍ୟ ଉଠିପାରୁ ନ ଥିଲି।

ଅତିଥିମାନେ ଗଲାପରେ ସୁରେଶ ରାଗରେ ଲାଲ ହୋଇ ମୋ ଘରକୁ ଆସିଲେ ଆଉ ଠୋ କରି ଚଟକଣାଟାଏ ମୋ ମୁହଁରେ ଦେଲେ। ମୋ ମୁଣ୍ଡ ଘୂରିଗଲା। ସେ ଯେତେପାରେ ଗାଳିଦେଇଗଲେ, ଗୋଡରେ ହାତରେ ପିଟିଗଲେ, "ଶାଳୀ ମୋର ସବୁ ପରିଶ୍ରମ ପଣ୍ଡ କରିଦେଲୁ। ଯେତେବେଳେ କାମ ହୋଇଯିବାର ଥିଲା ତୁ ସେତିକିବେଳେ ବାନ୍ତି ସାଧିଲୁ। ତୋ ଛୁଆକୁ କାଲିହିଁ ବାହାର କରିଦେବି। କାନ୍ ଖୋଲି କରି ଶୁଣ! ତୋର ଏ ଗୁଲବାଜି ଚଳିବ ନାହିଁ। ମୁଁ ତାଙ୍କୁ ସପ୍ତାହେ ସମୟ ମାଗିଛି। ସପ୍ତାହକ ପରେ ତୋତେ ତାଙ୍କ ସାମନାକୁ ଯିବାକୁ ପଡ଼ିବ। ତାଙ୍କ ଖୁସିରେ ସାଥି ଦେବାକୁ ହେବ।"

ସାରା ରାତି ମୁଁ ସେଇ କୋଠରୀରେ ବନ୍ଦୀ ହୋଇ କାନ୍ଦି କାନ୍ଦି କେବଳ ଭଗବାନଙ୍କୁହିଁ ପ୍ରାର୍ଥନା କରିବାରେ ଲାଗିଲି — 'ହେ ମଧୁସୂଦନ,

ତମେ ସବୁ ଭକ୍ତଙ୍କୁ ରକ୍ଷାକରିବ, ମୋତେ ଏହି ନର୍କରୁ ଉଦ୍ଧାର କର, ପ୍ରଭୁ !"

ସକାଳୁ ସକାଳୁ ଦ୍ୱାରେ କିଛି ନୂଆ ଲୋକଙ୍କ ଆୱାଜ ଶୁଣିବାକୁ ମିଳିଲା । ମୋର ପରମ ପୂଜ୍ୟ ପିତାଙ୍କ ସ୍ୱର ମୁଁ ଶୁଣିବାକୁ ପାଇଲି । ମନ ମୋର ନାଚି ଉଠିଲା । ମୁଁ ବନ୍ଦ ହୋଇଥିବା ଦରଜାକୁ ଖୁବ୍ ଜୋରରେ ବାଡ଼େଇବାରେ ଲାଗିଲି ।

ଝିଏ ଯୋଡାର ଶବ୍ଦ ମୋ ରୁମ୍‌ର ପାଖକୁ ଆସିବାର ଶୁଣିଲି – କବାଟ ଖୋଲିଲା । ଦେଖିଁତ ମୋ ପିତା ୩/୪ ଜଣ ପୁଲିସବାଲାଙ୍କୁ ସାଙ୍ଗରେ ନେଇ ଆସିଛନ୍ତି-ମୁଁ କହିବାକୁ ଆରମ୍ଭ କଲି "ବାବା ଆପଣ ମତେ ଏ ରାକ୍ଷସଙ୍କ କବଳରୁ ନେଇଯାଆନ୍ତୁ । ଏ ନର୍କରୁ ଉଦ୍ଧାର କରନ୍ତୁ । କାନ୍ଦି କାନ୍ଦି ମୋ ଧନ ସରିଲାଣି– ବାପା ମତେ ନିଜ ଛାତିରେ ଆଉଜାଇ ନେଲେ—ଧୈର୍ଯ୍ୟ ଦେଲେ । କହିଲେ, ସେ ମତେ ନିଶ୍ଚୟ ସାଥିରେ ନେଇଯିବେ । ସୁରେଶ ପୁଲିସବାଲାଙ୍କ କବଳରୁ ଖସିଯିବାପାଇଁ ଖୁନ୍ଦିଲେ କିନ୍ତୁ ପୁଲିସଅଫିସରମାନେ ତାଙ୍କୁ ଧରିପକାଇଲେ ଆଉ କହିଲେ, "ଡାକ୍ତର ସୁରେଶ ଶର୍ମା, ଆପଣଙ୍କୁ ଆମେ ଗିରଫକଲୁଁ । ଆପଣ ଥାନାକୁ ଚାଲନ୍ତୁ, ସେଠି ଅନ୍ୟସବୁ କଥା ।"

ସେଠାରୁ ଆମେ ସବୁ ଥାନାକୁ ଚାଲିଲୁଁ । ମୋର ଡାକ୍ତରୀପରୀକ୍ଷା ହେଲା । ମୋ ଶରୀର ଉପରେ ମାଡ଼ ହୋଇଥିବାର ସବୁ ଚିହ୍ନ ସେମାନେ ଦେଖିଲେ । ପୁରା ଛବରଣୀ ଦେଲାପରେ ଆମେ ସବୁ ଲକ୍ଷ୍ନୌ ଚାଲିଆସିଲୁଁ । ଆସିଲାପରେ ଘରେ ହିଁ ଛାଡ଼ପତ୍ର ପାଇଁ ଦରଖାସ୍ତ କରିଦେଲି । ଡାକ୍ତର ଏବଂ ପୋଲିସ ରିପୋର୍ଟ ଅନୁସାରେ ଛଅମାସ ଭିତରେ ଛାଡପତ୍ରପାଇଁ ଅନୁମତି ପାଇଗଲି । ଆଉ ସୁରେଶ ଶର୍ମାଙ୍କୁ ଦୁଇବର୍ଷ ସଶ୍ରମ କାରାଦଣ୍ଡ ମିଳିଗଲା ।

× × ×

ବାପାଙ୍କ ପାଖରୁ ଆସିବାର କଷ୍ଟଦର୍ପଣରେ ହିଁ ଆନନ୍ଦ ଜନ୍ମ-ହେଲା । ମୁଁ ଦେଇ ପିଲାଟିର ଲାଳନ ପାଳନରେ ନିଜକୁ ନିଯୋଜିତ କଲି । ଦୁଇଟି ବର୍ଷ ପିତାଙ୍କ ଘରେ କେମିତି କଟିଗଲା ମୁଁ ଜାଣିପାରିଲି ନାହିଁ ।

ଆନନ୍ଦ ମଧ୍ୟ ବଡ଼ ହେବାରେ ଲାଗିଲା । ବାପା ମୋପାଇଁ ନିଜ କଲେଜରେ ଗୋଟିଏ ଅଧ୍ୟାପିକାର ଚାକିରି ଯୋଗାଡ଼ କରିଦେଲେ । ସମୟ ଖୁବ୍ ଆରାମରେ କଟିଗଲା । ଆନନ୍ଦର ତୁଲୁତୁଲିଆ ଦନ୍ତୋଳି କଥାରେ ଘରେ ଆନନ୍ଦର ଜୁଆର ଖେଳୁଥିଲା । ସମସ୍ତେ ତାକୁ ଆଦର କରୁଥିଲେ ।

ଦିନେ ମୁଁ କଲେଜରୁ ଫେରୁଥିଲି । ଆମ ଘରର ରାମୁ ଦୌଡ଼-ଦୌଡ଼ ଆସି ମତେ ଖବର ଦେଲା - "ମା' ମା' ଆନନ୍ଦ ବାହାରେ ଖେଳୁଥିଲା ତା ପରେ କୁଆଡ଼େ ଚାଲିଯାଇଛି । ଖୋଜି ଖୋଜି ପାଉନାହିଁ । ଆମେ ସବୁ ଦୁଇଘଣ୍ଟାହେଲା ତାକୁ ଖୋଜି ଖୋଜି ଥକି ଗଲୁଣି ।"

ମୁଁ ବ୍ୟସ୍ତହୋଇ ବାପା, ସାନଭାଇ ଇତ୍ୟାଦିଙ୍କୁ ନେଇ ସହର ସାରା ଖୋଜି ଆସିଲି । ପୋଲିସରେ ମଧ୍ୟ ଖବର ଦିଆଗଲା କିନ୍ତୁ କେଉଁଠି-ହେଲେ ପତ୍ତା ମିଳିଲା ନାହିଁ ।

ରାତି ୧୦ଟାପରେ ମୁଁ ଖୁବ୍ କ୍ଳାନ୍ତ ଏବଂ ବିଧ୍ୱସ୍ତ ମନରେ ଘରକୁ ଫେରି ବିଛଣାରେ ମୁହଁ ମାଡ଼ି କାନ୍ଦିବାରେ ଲାଗିଲି । ଭଗବାନ୍ ମୋର ଧୈର୍ଯ୍ୟର ପରୀକ୍ଷା ନେଉଛନ୍ତି । ଏହି ସମୟରେ ମୋ ନଜର ପଡ଼ିଗଲା ଝରକା ପାଖକୁ — ଝରକାରେ ଖଣ୍ଡିଏ କାଗଜ ମୋଡ଼ା ମୋଡ଼ି ହୋଇ ଥୁଆହୋଇଥିଲା — ମୁଁ ହଠାତ୍ ଉଠିପଡ଼ି ସେଇ କାଗଜ ଖଣ୍ଡକୁ ନେଇ ଆସି ଖୋଲି ପଢ଼ିଲି —

"ଗାୟତ୍ରି ! ମୁଁ ତମ ଉପରେ ପ୍ରତିଶୋଧ ନେବାପାଇଁ ତମର ସବୁଠୁଁ ପ୍ରିୟ ବସ୍ତୁ ମୁନାକୁ ତମ ପାଖରୁ ନେଇ ଆସିଛି — ବର୍ତ୍ତମାନ ତମେ

ସାରା ଜୀବନ ତାକୁ ଝୁରି ଝୁରି କଟାଇ ଦେବ । ଏହାହିଁ ତମପାଇଁ ଉପଯୁକ୍ତ ଦଣ୍ଡ । ଯଦି ତାର ମଙ୍ଗଳ ଚାହଁ ତେବେ ପୁଲିସରେ ଖବର ଦେବନାହିଁ । ଅନ୍ୟଥା ତମ ପୁଅର ଜୀବନ ଯିବ ।"

ତମର ସୁରେଶ

ମୁଁ ତାଙ୍କର ନିର୍ଦ୍ଦୟ ତଥା ନୀଚ ସ୍ୱଭାବ କଥା ଜାଣିଥିଲି । ଏଥିପାଇଁ ମୁଁ ସମସ୍ତଙ୍କ ସାଙ୍ଗରେ ପରାମର୍ଶ କରି ସ୍ଥିର କଲୁଁ ଯେ ପୁଲିସ୍ ପାଖରୁ ଏ କେଶ୍ ଉଠାଇ ଆଣିବା, ଆଉ ଚୁପ୍ ଚାପ୍ କାହାଣୀ ଦେଖିବା । ଏ ଦୁଃଖ ମୋର ଅସହ୍ୟ ହେଲା । ମୁଁ ପ୍ରାୟ ବିଛଣାରେ ପଡ଼ିରହିଲି— ଘର ଦ୍ୱାର ସବୁ ମତେ ବିଷପରି ଲାଗିଲା । ମୁଁ କାହାସାଙ୍ଗରେ କଥାବାର୍ତ୍ତା କରିବାକୁ ପସନ୍ଦ କଲି ନାହିଁ । ଦୁନିଆର ସବୁକିଛି ମତେ ଅନ୍ଧାର ଦେଖାଗଲା ।

ସମୟ ଗଡ଼ିଯିବାରେ ଲାଗିଲା – ମୁଁ କଲେଜରୁ ଛୁଟି ନେଇଥିଲି- ପୁଣି ଧୀରେ ଧୀରେ ମନକୁ ବୁଝାଇ କଲେଜରେ ଯୋଗଦେଲି ।

× × ×

ଏବେ ଆମର କଲେଜରେ ଜଣେ ନୂଆ ପ୍ରିନସିପାଲ୍ ଯୋଗ-ଦେଇଛନ୍ତି । ଡାକ୍ତର ପ୍ରଶାନ୍ତ ବାନାର୍ଜୀ । ବେଶ୍ ଶାନ୍ତ ଏକ ସରଳ ସ୍ୱଭାବର ଲୋକ— ଖୁବ୍ କମ୍ କଥା କହନ୍ତି । ବିଶ୍ୱବିଦ୍ୟାଳୟର କୃତି ଛାତ୍ର— କଲେଜରେ ମଧ୍ୟ ତାଙ୍କର ଖୁବ୍ ସୁନାମ । ଆମେ ସମସ୍ତେ ଅଧ୍ୟାପକ, ଅଧ୍ୟାପିକା ତାଙ୍କୁ ଖୁବ୍ ପସନ୍ଦ କରୁଥିଲୁଁ । ମୋର କିନ୍ତୁ ମନଟା ସବୁବେଳେ ଉଦାସ ରହୁଥିଲା— ମୁଁ କାହା ସାଙ୍ଗରେ କଥାକହିବାକୁ ପସନ୍ଦ କରୁନଥିଲି । ପାଠ ପଢ଼ାଇ ସାରିଲା ପରେ ମୁଁ କାହା ସାଙ୍ଗରେ କଥା ନକହି ସିଧା ଘରକୁ ଚାଲି ଆସୁଥିଲି ।

ଥରେ ମୋର ପିରିୟଡ୍ ଖାଲିଥିଲା, ମୁଁ କମନ୍ ରୁମ୍ ରେ ଦେଖିଲି ବାନାର୍ଜୀ ସାହେବ ଏକୁଟିଆ ବସିଛନ୍ତି ମୁଁ ଯେତେବେଳେ ବହି ଖାତା ନେଇ

ବାହାରକୁ ଆସିବାପାଇଁ ବସିଲି ସେ ମୋତେ ଡାକିଲେ । ସତରେ ମୁଁ ଡରିଗଲି । ସେ କହିଲେ "ଆପଣ ଯାଆନ୍ତୁ ନାହିଁ ଆପଣଙ୍କ ସାଙ୍ଗରେ କଥା ଅଛି । ଯଦି ଆପଣ ଖରାପ ନଭାବନ୍ତି ତେବେ ମୁଁ ଜାଣିବାକୁ ଚାହେଁ ଆପଣ ସବୁବେଳେ ଏତେ ଉଦାସ କାହିଁକି ରହୁଛନ୍ତି···?"

ମୁଁ ଟିକିଏ କ୍ଷୁବ୍ଧ ସ୍ୱରରେ ଉତ୍ତର ଦେଲି —"ଏଇଟା ମୋର ପ୍ରାଇଭେଟ୍ ମାମଲା; ଆପଣ ଏ ବିଷୟରେ ପଶିବାପାଇଁ ଏତେ ଇଚ୍ଛୁକ କାହିଁକି···?"

ସେ ଆହୁରି ଶାନ୍ତ ସ୍ୱରରେ ଜବାବ ଦେଲେ—"ବେଳେବେଳେ ଦୁଃଖର ବୋଝଟାକୁ ବାଣ୍ଟିନେଲେ ବୋଝ ହାଲୁକା ହୋଇଯାଏ ।"

ଏହି ସମୟରେ କଲେଜର ଘଣ୍ଟା ବାଜିଗଲା । ଆମେସବୁ ନିଜ ନିଜର କ୍ଲାସ୍‌କୁ ଚାଲିଗଲୁ । ଏବେ ମଝିରେ ମଝିରେ ଆମ ଦୁଇଜଣଙ୍କ ଭିତରେ କଥାହୁଏ । ଯେତେବେଳେ ରାତିରେ କ୍ଲାନ୍ତହୋଇ ମୁଁ ବିଛଣାରେ ଗଡ଼ପଡ଼େ ସେତେବେଳେ ଡକ୍ଟର ବାନାର୍ଜୀଙ୍କ ଶାନ୍ତ ମୁହଁଟା ମୋ ଆଖି-ଆଗରେ ନାଚଉଠେ ।

ମାସପରେ ମାସ ବିତିଯିବାରେ ଲାଗିଲା । ଶୀତ ଆସିଗଲା । କଲେଜର ଛୁଟି ମଧ୍ୟ ହେଲା । ଆମର କଲେଜର ଗୋଟିଏ ପିକ୍‌ନିକ୍ ପାର୍ଟିର ଆୟୋଜନ କରାଗଲା — ଶିକ୍ଷକ ଶିକ୍ଷୟିତ୍ରୀ ଛାତ୍ର ଛାତ୍ରୀମାନଙ୍କୁ ନେଇ ଯମୁନା ନଦୀ କୂଳରେ ଏକ ମନୋରମ ଆମ୍ବ ତୋଟାରେ ଏହି ବଣଭୋଜିପାଇଁ ସ୍ଥାନ ଠିକ୍‌ହେଲା । ମତେ ସେସବୁ ଆୟୋଜନ କରିବାକୁ ଦିଆଗଲା । ଆମେ ଚାରିଜଣ ଅଧ୍ୟାପକ ଅଧ୍ୟାପିକାମାନଙ୍କ ମଧ୍ୟରେ ଡାକ୍ତର ବାନାର୍ଜୀ ମଧ୍ୟ ଜଣେ ଥିଲେ ।

ପିଲମାନେ ସେମାନଙ୍କର ବିଭିନ୍ନ ପ୍ରକାରର ମଜା, ନାଚବା ଗାଇବା ଇତ୍ୟାଦିରେ ମସ୍ତ ଥିଲେ । ଖାଇବା ଆରମ୍ଭହେବାକୁ ଡେରି ଥିଲା । ବାନାର୍ଜୀ

୯

ମତେ କହିଲେ— "ଗାୟତ୍ରୀ ଦେଖ, ସ୍କୁଲରୁ ଟିକିଏ ଯମୁନା ନଦୀର କୂଳେ ବୁଲି ଆସିବା ।" ମୁଁ ମନ୍ତ୍ରମୁଗ୍ଧ ଭଳି ତାଙ୍କ ସାଙ୍ଗରେ ଚାଲିଗଲି - ଆମେ ଦୁହେଁ କିଛି ସମୟ ଚୁପ୍‌ଚାପ ଚାଲିଲୁଁ । ମତେ ତାଙ୍କ ସାନିଧ୍ୟ ଖୁବ୍ ଆନନ୍ଦ ଦେଉଥିଲା । ସେ ଧୀର କଣ୍ଠରେ କହିଲେ— "ଆଜି ଆପଣଙ୍କ ମନକଥା ମୋତେ ଖୋଲି କହିବାକୁ ପଡ଼ିବ । ଯଦି ସମ୍ଭବ ହେବ ତେବେ ମୁଁ ଆପଣଙ୍କ କୋଟିଏ ଚିନ୍ତା ହାଲୁକା କରିବାରେ ସାହାଯ୍ୟ କରିବି ।"

ମୋର କ'ଣ ହେଲା କେଜାଣି ଏଭଳି ଅନ୍ୟ ଏକ ପୁରୁଷ ଆଗରେ ମୁଁ ମୋର ମନ କଥା ସବୁ ଖୋଲି କହିପକାଇଲି—କହୁଁ କହୁଁ ମୋ ଆଖିରୁ ଅନବରତ ଲୁହର ଧାର ଛୁଟିବାରେ ଲାଗିଲା । ସେ ମୋ ପିଠିରେ ହାତଦେଇ ବୁଝାଇବାରେ ଲାଗିଲେ । ସେ ମୋତେ ସାନ୍ତ୍ୱନା ଦେଇ କହିଲେ—"ଆଜି ମୋ ହୃଦୟରେ ଆପଣଙ୍କ ପାଇଁ ସମ୍ମାନ ଆହୁରି ବଢ଼ିଗଲା । ମୁଁ ଚେଷ୍ଟା କରିବି ଆପଣଙ୍କ ଜୀବନକୁ ସୁଖମୟ କରିବାପାଇଁ । ଆପଣ ଅତୀତର ସବୁ ଦୁଃଖକୁ ସ୍ୱପ୍ନପରି ପାଶୋରି ଦେବେ । ଏତିକି ମୋର ଆପଣଙ୍କୁ ବିନତି ।"

ସେହିଦିନ ସନ୍ଧ୍ୟାରେ ସେ ଆମ ଘରକୁ ଆସିଲେ । ଆଉ ବାପାଙ୍କ ଆଗରେ ଅନୁରୋଧ କରି ମୋ ହାତ ଧରି ମୋତେ ମାଗିନେଲେ । ଆମର ବିବାହ ଆର୍ଯ୍ୟ ସମାଜରେ ବିନା ଆଡ଼ମ୍ବରରେ ସମ୍ପନ୍ନ ହୋଇଗଲା ।

୧୦

କିଛି ଦିନ ପରେ ତାଙ୍କୁ ଦିଲ୍ଲୀର ଅନ୍ୟାନ୍ୟ ଭଲ କଲେଜରେ ମୁଖ୍ୟ ଅଧ୍ୟାପକ ପଦବୀ ମିଳିଗଲା । ଦିଲ୍ଲୀରେ ସୁଖ ଶାନ୍ତିରେ ଆମର ଜୀବନ କଟିବାରେ ଲାଗିଲା । ମୋ ବାପା ମଧ୍ୟ ବରାବର ଆସି ମତେ ବୁଝାଇବାରେ ଲାଗିଲେ । ସେ ମଧ୍ୟ ଆମର ସୁଖଶାନ୍ତି ଦେଖି ଖୁସିହେଲେ । ପରେ ପରେ ପ୍ରବୋଧ, ପ୍ରଜ୍ଞା ଆମ କୋଳକୁ ଆସି ଆମ ଘରକୁ ପୂର୍ଣ୍ଣ କରିଦେଲେ ।

ଧୀରେ ଧୀରେ ଆମ ବିବାହିତ ଜୀବନର ଅଠେଇଶ ବର୍ଷ ପୂର୍ଣ୍ଣ ହୋଇଗଲା । ପୁଅ ପ୍ରବୋଧ ମଧ୍ୟ କୃତିତ୍ୱର ସହ ଏମ୍. ଏ. ପାଶ୍ କଲା । ଆଉ ଉଚ୍ଚଶିକ୍ଷାପାଇଁ ଆମେରିକା ଗଲା । ଝିଅ ପ୍ରଜ୍ଞାର ବିବାହ ମଧ୍ୟ ଜଣେ ଖୁବ୍ ବଡ ଅଫିସରଙ୍କ ସାଥିରେ ହୋଇଗଲା । ମୋତେ ତାକୁ କୌଣସି ପ୍ରକାରର ଯୌତୁକ ଦେବାପାଇଁ ପଡ଼ିଲା ନାହିଁ ।

ଏଥି ମଧ୍ୟରେ ମୋର ମଧ୍ୟ କେତେ ଉନ୍ନତି ହେଲା । ମୋର କେତେ ଖଣ୍ଡ ବହି ମଧ୍ୟ ପ୍ରକାଶିତ ହେଲା । ମୋ ଗୃହ ଗର୍ବରେ ଫୁଲିଉଠିଲା ।

ଆମ ଦୁହିଁଙ୍କଯୁଗର ପ୍ରେମମୟ ଜୀବନ ମଧୁରଭାବେ ବିତିଗଲା । ସତେ ଆମର ଏ ସୁଖମୟ ଜୀବନ ଉପରେ କାହାର ନଜର ପଡ଼ିଗଲା । ଆଉ ହଠାତ୍ ତାଙ୍କର ଦେହ ଖରାପ ହୋଇଗଲା ।

ହେ ପ୍ରଭୁ ଏ ବଜ୍ରପାତ କାହିଁକି ? ମୋର ସବୁ ପୁଣ୍ୟ ବର୍ତ୍ତମାନ ସରିଗଲା । ଏଥିପାଇଁ ସ୍ୱର୍ଗରୁ ମୁଁ ଖସି ଆସିଲି ।

ହେ ଭଗବାନ ଯଦି ତୁମର ଏହି ଇଚ୍ଛା ତେବେ ଏମିତିଆ ମୋର ଜୀବନଟା ବିତିଯିବ । ତୁମର ସେବାକରି ମୁଁ ନିଜକୁ ଲଗାଇଦେବି । ମୋ ଗୃହପଟେ ଯେଉଁ ଲୋକମାନେ ଦୁଃଖରେ ଜୀବନ କାଟୁଛନ୍ତି ସେମାନଙ୍କ ସେବାକରି ମୁଁ ସେମାନଙ୍କର ଦୁଃଖ ବାଣ୍ଟିନେବି । ଦୁଃଖିମାନଙ୍କ ସେବାରେ ମୁଁ ନିଜକୁ ଉତ୍ସର୍ଗ କରିବି । ତୁମପ୍ରତି ଏହା ମୋର ହେବ ଗଭୀର ଶ୍ରଦ୍ଧାଞ୍ଜଳି ।



## ଲେଖିକା ପରିଚୟ

ସଫଳ ଗୃହିଣୀ ଜୀବନରେ ଶ୍ରୀମତୀ ବିନୋଦିନୀ ଏକ ସମର୍ପିତ ସମାଜ ସେବିକା । ୧୯୩୫ ମସୀହାରେ ବିହାରର ହରିଗ୍ରାମ ପରି ଏକ ଛୋଟ ଗାଁରେ ଜନ୍ମ ! ସେହି ଗ୍ରାମରେ ପ୍ରାଥମିକ ଶିକ୍ଷା ସମାପ୍ତି ପରେ .ବାରଣାସୀ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଉଚ୍ଚଶିକ୍ଷା ପ୍ରାପ୍ତ । ୧୯୫୨ରେ ବିବାହ ପରେ କଲିକତା ମହାନଗରୀରେ ପଦାର୍ପଣ । ବିଗତ ୩୬ ବର୍ଷ ମଧ୍ୟରେ ସେ ଭାରତ ତଥା ବିଶ୍ୱର ବହୁ ଦେଶ ଭ୍ରମଣ କରିଛନ୍ତି ।

ଶୈଶବାବସ୍ଥାରୁ ବିନୋଦିନୀଙ୍କର ପଢାଲେଖାରେ ଗଭୀର ରୁଚି ପରିଲକ୍ଷିତ ହୋଇଥିଲା । ମାତା କବୟିତ୍ରୀ ଶକୁନ୍ତଳା ଦେବୀଙ୍କ ଠାରୁ ସେ ଏହି କଳା ହାସଲ କରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଶକୁନ୍ତଳା ଦେବୀ ଜଣେ ଜଣାଶୁଣା କବି, ବିହାର ବିଧାନସଭାର ସଦସ୍ୟା ତଥା ଜଣେ ବିଶିଷ୍ଟ ସମାଜସେବିକା ଥିଲେ ।

ବିନୋଦିନୀଙ୍କର ଗଳ୍ପ, ପ୍ରହସନ ତଥା ନାଟକ ସ୍କୁଲ କଲେଜର ପତ୍ର ପତ୍ରିକାମାନଙ୍କରେ ପ୍ରକାଶିତ ହୋଇ ଆସୁଥିଲା । ଆକାଶବାଣୀରେ ମଧ୍ୟ ଲେଖିକାଙ୍କର ବାର୍ତ୍ତା, ପରିଚର୍ଯ୍ୟା, କାହାଣୀ ସବୁ ବହୁଳଭାବରେ ପ୍ରସାରିତ । "ବିନ୍ଦିଆର ଆତ୍ମକଥା" ଲେଖିକାଙ୍କର ପ୍ରଥମ ପୁସ୍ତକ ।